ହାସ୍ୟବ୍ୟଙ୍ଗ ଭରା ନାଟକ

# ହାରକିନ୍ ଦାସ
# ହିରୋ

ନାଟ୍ୟକାର

ହେମେନ୍ଦ୍ର ମହାପାତ୍ର



ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ବାଲେଶ୍ୱର

# ହାରକିନ୍ ଦାସ ହିରୋ

ନାଟ୍ୟକାର


**ହେମେନ୍ଦ୍ର ମହାପାତ୍ର**

ସୁନହଟ, ବାଲେଶ୍ୱର

ଦୂରଭାଷ : ୯୮୬୧୩୫୦୯୫୧



*ପ୍ରକାଶକ :* କାଳୀପଦ ପଣ୍ଡା, **ସୁବର୍ଣ୍ଣଶ୍ରୀ ପ୍ରକାଶିନୀ**

ନେଳିଆବାଗ, ଶ୍ରୀକଣ୍ଠପୁର, ବାଲେଶ୍ୱର, ମୋ: ୯୪୩୭୦୮୯୨୪୧





ପ୍ରଥମ ସଂସ୍କରଣ: ୨୦୧୭, ମୂଲ୍ୟ : ଟ.୫୦/-


---

# HARKIN DAS HERO


**by : Hemendra Mohapatra**

Sunhat, Balasore

Ph.: 9861350951



**Publisher : Kalipada Panda, SUBARNASHREE PRAKASHINI**

Neiliabag, Shrikanthapur, Balasore, Mob : 9437089241





**First Edition** : 2017, **Price :** Rs. 50 /-

# ଉତ୍ସର୍ଗ

ମୋ ପ୍ରିୟ ପୁତ୍ର କନ୍ୟାଙ୍କୁ -

ଯିଏ ମୋ ମୁହଁରୁ ପଦେ ହସକଥା ଶୁଣିବା ପାଇଁ ଅନବରତ ରହିଁ ବସିଥାଆନ୍ତି, ଯାହାଙ୍କ ମୁହଁରେ ସବୁବେଳେ ହସଟିକକ ଦେଖିବା ପାଇଁ ମୁଁ ଦିନରାତି ଏକ କରିଦେବାକୁ ପଛାଏ ନାହିଁ ।

ଯାହାଙ୍କୁ ପାଖରେ ବସାଇ ଯାବତୀୟ ହାସ୍ୟରସାତ୍ମକ କାର୍ଯ୍ୟକ୍ରମ ଦେଖେ ଓ ଦେଖାଏ - ସେହି ମୋର ଅତି ପ୍ରିୟପୁତ୍ର କୁକୁନୁ(ଶାଶ୍ୱତ) ଓ ଅତିପ୍ରିୟ କନ୍ୟା ସୁପୁ(ଶିକ୍ଷାସିକ୍ତା)ଙ୍କ ଉଦ୍ଦେଶ୍ୟରେ ଏହି ହାସ୍ୟବ୍ୟଙ୍ଗଭରା ନାଟକ

'ହାରକିନ୍ ଦାସ ହିରୋ' ଉତ୍ସର୍ଗ କଲି ।

- *ବାପି*

# ହାରକିନ୍ ସମ୍ବନ୍ଧରେ

'ହାରକିନ୍' ଏକ ପ୍ରତୀକାତ୍ମକ ଶବ୍ଦ, ଯାହାକୁ ଅନେକ ସମୟରେ ହାସ୍ୟବ୍ୟଙ୍ଗ ପ୍ରୟୋଗରେ ବ୍ୟବହାର କରାଯାଇଥାଏ । ଏଠାରେ ମଧ୍ୟ ତାହାହିଁ କରାଯାଇଛି । କିଛି ଲୋକ ଅଛନ୍ତି, ନିଜକୁ ଅତି ଚତୁର ମନେକରି ଅନ୍ୟକୁ ବୋକା ବୋଲି ଭାବନ୍ତି ଏବଂ ଲୋକମାନଙ୍କୁ ଠକିବାରେ ଆନନ୍ଦ ଉପଭୋଗ କରନ୍ତି । ଏହି ପ୍ରଣାଳୀକୁ ବି ହାରକିନ୍ ବୋଲି ଧରି ନିଆଯାଇପାରେ । ଏଠାରେ ଏମିତି ଏକ ଅଭ୍ୟାସଗତ ଚତୁର ବ୍ୟକ୍ତିର ଉପସ୍ଥାପନ କରାଯାଇଛି, ଯିଏକି ତା' ଅର୍ଦ୍ଧଶତାବ୍ଦୀର ଜୀବନକାଳ ମଧ୍ୟରେ ଏତେ ହାରକିନ୍ ଦେଖେଇଛି ଯେ ଲୋକେ ତାଙ୍କୁ 'ହାରକିନ୍' ବୋଲି ଡାକିବାରେ ଆନନ୍ଦ ପାଆନ୍ତି । ସେ ମଧ୍ୟ ନିଜକୁ ହାରକିନ୍ ଦାସ ଭାବରେ ଶୁଣିବାକୁ ଭଲ ପାଆନ୍ତି ।

ଏହି ନାଟକରେ ତାଙ୍କରି ହାରକିନ୍ ଉପରେ ଏକ ଘଟଣାର ଅବତାରଣା କରାଯାଇଛି । କିନ୍ତୁ ଏଠାରେ ହାରକିନ୍ ଦାସ ହାରକିନ୍ ଦେଖଉ ଦେଖଉ ହାରକିନ୍‌ର ଜାଲରେ ନିଜେ ଛନ୍ଦି ପଡ଼ନ୍ତି । ତଥାପି ନିଜର କଳାପ୍ରଦର୍ଶନ ଜାରି ରଖନ୍ତି । ପରିଣତିରେ ଜଣେ ହିରୋ ହୋଇ ବାହାରନ୍ତି **'ହାରକିନ୍ ଦାସ ହିରୋ'** । ସଂପୂର୍ଣ୍ଣ ହାସ୍ୟବଙ୍ଗଭରା କାହାଣୀରେ ଭରପୂର ନାଟକ 'ହାରକିନ୍ ଦାସ ହିରୋ' ମଞ୍ଚରେ ତ ଦର୍ଶକଙ୍କୁ ବେହାଲ କରି ପକେଇଛି ।

'ଝଙ୍କାର' ପତ୍ରିକାରେ ପ୍ରକାଶିତ ହୋଇ ପାଠକମାନଙ୍କୁ ମଧ୍ୟ ହସେଇ ହସେଇ ବେଦମ୍ କରି ପକେଇଛି ।

ଏହାର ମୁଦ୍ରିତ ରୂପ ନିଶ୍ଚିତ ଭାବରେ ପାଠକୀୟ ତଥା ଦର୍ଶକୀୟ ଆଦୃତି ପାଇବ ବୋଲି ମୋର ଆଶା ଓ ଭରସା ।

ଜେମେନ୍ଦ୍ର ମହାନ୍ତି

## ସ୍ରଷ୍ଟା, ବାଲେଶ୍ୱର ଦ୍ୱାରା ପ୍ରଯୋଜିତ ନାଟକ
## 'ହାର୍‌କିନ୍ ଦାସ୍ ହିରୋ'

**ଭୂମିକାରେ**

ହାରକିନ୍ / ତସ୍କର

ଚଟାପଟ ଦାସ

ଝପ୍‌ପଟ ସିଂ

ମିଷ୍ଟର ମାରାଣ୍ଡି

ହରକତ ଅଲ୍ଲୀ

ଦୁଃଖମୋଚନ ପଟ୍ଟନାୟକ

ମକ୍କୁଭାଇ ଛକ୍‌କାରାମ ଗୁପ୍ତା

ତରୁଣ

ସାଧୁ

ଭାରତୀ

ସଂଗୀତ - ନନ୍ଦକିଶୋର ଦାସ

ମଂଚରୂପ - ନିତ୍ୟନାରାୟଣ ଷଡ଼ଙ୍ଗୀ

ନିର୍ଦ୍ଦେଶନା - ହେମେନ୍ଦ୍ର ମହାପାତ୍ର

# ପ୍ରସ୍ତାବନା ପର୍ବ

(ମଂଚ ସଂପୂର୍ଣ୍ଣ ସାଙ୍କେତିକ । କଳା ଅଥବା ନୀଳ ପରଦାରେ ଆବୃତ୍ତ ମଂଚଟି ତିନୋଟି Zoneରେ ବିଭକ୍ତ । Left Zone ଥାନା ଭାବରେ Right Zone କେତେବେଳେ ନେତା ନିବାସ ତ କେତେବେଳେ ପୁଲିସ୍‌ର ଘର ଭାବରେ ବ୍ୟବହୃତ ହୁଏ ଏବଂ Central Zone ରାସ୍ତା, ସଭାମଣ୍ଡପ ଏବଂ ଚୋର ମହଲ ଭାବରେ ବ୍ୟବହୃତ ହୋଇଥାଏ ।

ଆଲୋକ ଆସିବା ବେଳକୁ ଦେଖାଯାଏ Central Zoneରେ ନାଟ୍ୟକାର ହାରକିନ ଦାସ ପ୍ରାରମ୍ଭିକ ସୂଚନା ଦେବାପାଇଁ ଯୋଡ଼ହସ୍ତରେ ଦଣ୍ଡାୟମାନ ।)

ହାରକିନ୍ : ଶୁଭ ସନ୍ଧ୍ୟା ! ଆଜିର ଏ ଶୀତସିକ୍ତ ସନ୍ଧ୍ୟାରେ ଆପଣମାନଙ୍କୁ ନାଟ୍ୟଭାରତୀ କବିରତ୍ନ ତଥା କଥାସମ୍ରାଟ୍ ଶ୍ରୀ ହରେକୃଷ୍ଣ ଦାସ ଓରଫ୍ ହାରକିନ ଦାସ ସ୍ୱାଗତ କରୁଛି । ଓଡ଼ିଆସାହିତ୍ୟର ଘଡ଼ିସନ୍ଧି ମୁହୂର୍ତ୍ତରେ ଆମ୍ଭେ ଆବିର୍ଭୂତ ହୋଇ ଓଡ଼ିଆ ସାହିତ୍ୟର ପ୍ରତ୍ୟେକ ବିଭାଗ ଉପରେ ବୈପ୍ଳବିକ ଭାବଧାରା ପ୍ରୟୋଗ କରି ଓଡ଼ିଆସାହିତ୍ୟର ସୁରକ୍ଷା ପାଇଁ କେତେ ଯେ ଯୁଗାନ୍ତକାରୀ ଉଦ୍ୟମ କରିଛୁ ତାହା ଆପଣମାନଙ୍କୁ ଊଣାଅଧିକେ ଜଣା । ନୂତନତ୍ୱର ପ୍ରୟୋଗ ଓ ପରୀକ୍ଷା ନାଆଁରେ କେତେ ନା କେତେ.... ମାନେ.... ଏଇ.... ମାନେ.... କଣତ....ଏ ହାରକିନ ନ ଦେଖେଇଛୁ ତା'ର ହିସାବ ନାହିଁ । ସେସବୁ ହାରକିନ୍ ଦେଖି ଆପଣମାନେ ଶ୍ରଦ୍ଧାରେ ଏ ଅକାଞ୍ଚନକୁ ହରେକୃଷ୍ଣରୁ ହାରକିନ୍ କରିଦେଇଛନ୍ତି । ଆମ୍ଭେ ବି ଚୁପ୍‌ଚାପ୍ ମାନିଯାଇଛୁ । ଆଉ ନିଜକୁ ହାର୍‌କିନ୍ ଦାସ ବୋଲି ଧରିନେଇଛୁ । ଆଜି ଆପଣମାନଙ୍କ ସମ୍ମୁଖରେ ସେହି ହାରକିନ୍‌ର କରାମତିରୁ କିଛିଟା ପେଶ୍ କରିବାର ଆଶା ନେଇ ଛିଡ଼ା ହୋଇଛୁ । ଆପଣମାନେ ଏଇ ମଞ୍ଚରେ ଆମ୍ଭର କବିତା ଶୁଣିଛନ୍ତି । ଗଳ୍ପ ପଢ଼ିଛନ୍ତି । ଆଉ ନାଟକ ମଧ୍ୟ ଦେଖିଛନ୍ତି । କିନ୍ତୁ

ଆମ୍ଭକୁ ସଶରୀରେ ଦେଖିବାର ସୁଯୋଗ ବୋଧହୁଏ ପାଇ ନାହାନ୍ତି । କାରଣ ଆମ୍ଭେ ଆଜିର ଏ ଦେଖେଇ ହେବାର କଳାକୌଶଳକୁ ଆଦୌ ପସନ୍ଦ କରୁନୁ । ଆଜି ଅବଶ୍ୟ ଅବସ୍ଥା ଚକ୍ରରେ ପଡ଼ି ଆମ୍ଭେ ବାଧ ହୋଇଛୁ । ନାନା ଭଂୟ କରନ୍ତୁନି । ନାଟକ ଆରମ୍ଭ କରିବାକୁ ଯାଉଛୁ । ଆଜିର ନାଟକ – (ହୁଇସିଲ୍ ମାରନ୍ତି । ଆଲୁଅ କମିଯାଇ କେନ୍ଦ୍ରୀଭୂତ ହୁଏ ହାରକିନ୍ ଉପରେ । ଆଉଥରେ ହୁଇସିଲ୍ ମାରନ୍ତି । ଘରିଆଡ଼କୁ ଋହାଁନ୍ତି । ପୁଣି ହୁଇସିଲ୍ ମାରନ୍ତି । ଏମିତି ବାରମ୍ବାର ହୁଇସିଲ୍ ମାରିମାରି ବିରକ୍ତ ହୁଅନ୍ତି । ଶେଷରେ ପାଟିକରି ଉଠନ୍ତି ଉଇଂସ୍ ଉଦ୍ଦେଶ୍ୟରେ ।)

ହାରକିନ୍ : କ'ଣ ହେଲା ? କେହି ଆସୁନ କାହିଁକି ? ହୁଇସିଲ୍ କ'ଣ ଶୁଭୁନି ? (ଏପଟ ସେପଟ ଋହିଁଲେ) ଆରେ ରାମ, ଦାମ, ଶାମ କୁଆଡ଼େ ଗଲ ? ମକରା, ମାଧିଆ, ମୁକୁନ୍ଦା ଆରେ କୋଉଁଠି ଅଛ ? ଆସ ହେ ଏଁ କେହିଜଣେ ବି ନାହାନ୍ତି ? ଏଗୁଡ଼ା ଗଲେ କୁଆଡ଼େ ? ମୋତେ ଗଛକୁ ଉଠେଇ ଦେଇ ମୂଳରୁ ଗଡ଼େଇ ଦେବେନା କ'ଣ ? ଏବେ କ'ଣ କରାଯିବ ? ମୋର ବହୁମୂଲ୍ୟ ଇଜ୍ଜତ ଟିକକ ମାଟିରେ ମିଶିଯିବ । ଆରେ... ହଉ ହେଲା....ଆସ । ଆମ୍ଭ କଳାକାରମାନେ ହଠାତ୍ କେଉଁଆଡ଼େ....ନିରୁଦ୍ଦିଷ୍ଟ ହୋଇ ଯାଇଛନ୍ତି । ତେଣୁ.....

(ଦର୍ଶକ ମହଲରୁ ପାଟି ଶୁଭେ ଏବଂ ତରୁଣମଂଚକୁ ଉଠିଆସେ ।)

ତରୁଣ : ଏ ପୁରୁଣା ଫାର୍ସ ପୁଣି ଆରମ୍ଭ କରିଦେଲ ?

ହାରକିନ୍ : ନାଇଁ ହେ ଫାର୍ସ କାହିଁକି ହେବ । ପିଲାଗୁଡ଼ା ଏଇଠି ଡ୍ରେସିଂ ହେଉଥିଲେ, ମୁଁ ନାଟ୍ୟକାର ଭାବରେ ଦି'ପଦ କହିବାକୁ ଆଗକୁ ଗଲି ଯେ, ଏହାରି ଭିତରେ କିଏ କୁଆଡ଼େ ଖସିଗଲେ ।

ତରୁଣ : ଖସିଗଲେ ନା ପଇସା ହଡ଼ପ୍ କରିବାର ଋଲ୍ ଚଳେଇ ଖସେଇ ଦେଲ ।

ହାରକିନ୍ : ମୋତେ ବିଶ୍ୱାସ କର ।

ତରୁଣ : ସେଦିନ ବି ଠିକ୍ ଏଇକଥା କହୁଥିଲ ମୋତେ ବିଶ୍ୱାସ କର ।

ହାରକିନ୍ : ମୁଁ କହୁଥିଲି ? କେଉଁଦିନ ?

ତରୁଣ : ମନେ ନାହିଁ ତ ? ମନେ ବି ରହିବନି । କାରଣ ପଇସା ନେବା ବେଳର ଘଟଣା ମନେ ରହେନି ।

ହାରକିନ୍ : ପଇସା ନବା ବେଳର ଘଟଣା ? ତମେ କ'ଣ କହୁଛ, ମୁଁ ତ କିଛି ବୁଝିପାରୁନି ।

ତରୁଣ : ବୁଝି ପାରୁନଥିବା ଲୋକକୁ ବୁଝେଇ ବି ହୁଏନି । ଛାଡ଼ (ଟିକେଟ୍‌ଟିଏ ବାହାର କରି) ଏଇଟା କ'ଣ ?

ହାରକିନ୍ : ଟିକେଟ୍ ହେଇଥିବ ।

ତରୁଣ : ଟିକେଟ୍ ହେଇଥିବ ନୁହେଁ ଟିକେଟ୍ । ତମେ ମୋତେ ବିକି ଥିଲ ।

ହାରକିନ୍ : ବିକିଥିବି....ହେଲେ.... କ'ଣ ହେଲା କି.....

ତରୁଣ : ଆଉ କିଛି କୁହନି, ନାଟକ ଦେଖେଇବ ତ ଦେଖାଅ । ନହେଲେ ପଇସା ଫେରାଅ ।

ହାରକିନ୍ : ଏଇ ତ ତମର ଧୈର୍ଯ୍ୟଶକ୍ତି ବୋଲି ଟିକେ ନାହିଁ । ତମର ଏଇ ଧୈର୍ଯ୍ୟହୀନତା ଯୋଗୁଁ ଏମିତି ବେକାର ବସିଛ ।

ତରୁଣ : ଓ ବାବୁ ! ସେ କଥା କୁହନି । ପଚିଶବର୍ଷ ବୟସ ପର୍ଯ୍ୟନ୍ତ ବେଶ୍ ଧୈର୍ଯ୍ୟ ଥିଲା । ତାପରେ କହିଲ କ'ଣ ନା ଅଠେଇଶ ପର୍ଯ୍ୟନ୍ତ ଅପେକ୍ଷା କର । ଅପେକ୍ଷା କଲି । ଅଠେଇଶ ପରେ କହିଲ ନାଇଁ ତିରିଶ ପର୍ଯ୍ୟନ୍ତ ଧୈର୍ଯ୍ୟ ଧର । ଧରିଲି ତିରିଶ ପରେ କହିଲ ବତିଶ ପର୍ଯ୍ୟନ୍ତ ଅପେକ୍ଷା କର । ଏବେ ବତିଶ୍ ପୂରିଲା, କହୁଛ କ'ଣ ନା ଆହୁରି ଧୈର୍ଯ୍ୟଧର । ଏମିତି ଧୈର୍ଯ୍ୟ ଧରିଧରି ଷାଠିଏ ବି ପୂରିଯିବ ।

ହାରକିନ୍ : ଓ ହୋ ବାବୁ ! ସେଗୁଡ଼ା ସବୁ ରାଜନୀତି ମାନେ ପଲଟିକାଲ କଥା । ଏଠି ସେଗୁଡ଼ା କାହିଁକି କହୁଛ ?

(ନେତା ପଶି ଆସନ୍ତି)

ନେତା : ହଇ ହେ ଦାସେ ! କ'ଣ କହିଲ ପଲଟିକାଲ କଥା । ତମେ ନାଟକ ଦେଖେଇ ପାରୁନ । ଅଥଚ ପଲଟିକାଲବାଲାଙ୍କ ଉପରେ ଦୋଷ ଲଦି ଲୋକଙ୍କୁ ଭୁଆଁ ବୁଲେଇ ଖସିଯାଉଛ ?

ହାରକିନ୍ : ଆଜ୍ଞା କଥା କ'ଣ କି.....

ନେତା : ତମେ ଆଉ ବେଶିକିଛି କୁହନି । ଢେର କହିଲଣି । ହଇଓ ମୋତେ ଯେ ଯାଇ କହିଲ - ଯେ ବଢ଼ିଆ ନାଟକ ହେବ । ବହୁତ ଲୋକ ଆସିବେ । ଆପଣ ଭବିଷ୍ୟତ M.L.A.ଭାବରେ କୃତୀ କଳାକାରଙ୍କୁ ପ୍ରାଇଜ୍ ବାଣ୍ଟିବେ ।

ହାରକିନ୍ : ଆଉ ସେହି ବାହାନା ଭିତରେ ନିଜର ଦଳୀୟ ପ୍ରଚାର ବି କରିଦେବେ ।

ନେତା : ବାସ୍, ଖାସ୍ ସେହି ଆଶାରେ ମୁଁ ଯାକୁ କହି ତାକୁ କହି ଧମକେଇ ଚମକେଇ ଚନ୍ଦା ଉଠେଇ ଦେଲି । ତମେ କ'ଣ ନା...

ହାରକିନ୍ : ଚନ୍ଦା ଉଠେଇକି ମୁଁ ତ ଆଉ ମାରିକି ଖାଇ ଯାଇନି

ତରୁଣ : ସେ ବାହାଦୂରୀ କଥାଗୁଡ଼ା ଆଉ କୁହନି ।

ହାରକିନ : ଓ ହ ବାବୁ ! ତମେ ଟିକିଏ ଧୈର୍ଯ୍ୟ ଧରିଲ ।

ତରୁଣ : ଫେର୍ ସେହି ଧୈର୍ଯ୍ୟ ।

ହାରକିନ୍ : ଆପଣ ଟିକିଏ ବସନ୍ତୁ ତ ପଟ୍ଟନାୟକବାବୁ ।

ନେତା : ବସିବି, ବସିଲେ କ'ଣ ହେବ ?

ହାରକିନ୍ : ଓ ହ ଆପଣ ଏଇଠି ଏଇ ଦର୍ଶକ ସାମ୍ନାରେ ବସିଲେ ଲୋକମାନେ ଭୋଟଦାତାମାନେ ଆପଣଙ୍କର ଅମାପ ଧୈର୍ଯ୍ୟଶକ୍ତିରେ ପ୍ରସନ୍ନ ହୋଇଯିବେ । ଆଉ ଭୋଟର ପ୍ରସନ୍ନ ହେଇଗଲେ ଆପଣଙ୍କର ଯାହାହେବ ତ ବୁଝୁଥିବେ ।

ନେତା : ହଉ, ଆଚ୍ଛା ଆଚ୍ଛା ଆସ ହେ ଯୁବକ ବସ ।

ତରୁଣ : ନାଇଁ ଆପଣ ବସିଲେ ଭୋଟ ପାଇବେ ।

ନେତା : ମୁଁ ଭୋଟ ପାଇଲେ ସିନା ତମେ ଚାକିରି ପାଇବ । ଆସ ବସ ।

ହାରକିନ : ହାଁ ହାଁ ବାସ୍ । (ବସେଇ ଦିଅନ୍ତି ଚଟାପଟ୍ ଆସେ)

ଚଟାପଟ୍ : ହଇଓ ହାରକିନ ସାଇବ ! ତମକୁ ତ ଭଲ ହାରକିନ ଦେଖେଇ ଆସେ । ମୁଁ ତ ମୋର ଷ୍ଟେସନଛକ, ବସ୍‌ଷ୍ଟାଣ୍ଡ, ସିନିମାଛକରେ ବୁଲିବୁଲି ବେଶ୍ ଦି'ପଇସା ପାଉଥିଲି । ମୋତେ ଯାଇ କହିଲ କ'ଣ ନା, ବଢ଼ିଆ ନାଟକ ହେବ । ବହୁତ ଲୋକ ଆସିବେ । ଡ୍ରାମା ଭାଙ୍ଗିବା ବେଳେ ବହୁତ ଭିଡ଼ହେବ । ବାସ୍ ତୁ ତୋର ଆରାମରେ ଦଶପନ୍ଦର ପକେଟ କାଟିଦେବୁ । ମୁଁ ତମ କଥାରେ ବିଶ୍ୱାସ କରି ଟିକଟ କାଟିଲି । ଫେର୍ ଇସ୍‌ପେଶାଲ୍ । କାହିଁ ? ମୂଳରୁ ନାଟକ ତ ନାହିଁ । ଲୋକ ଆସିବେ କେଉଁଠୁ ନା ମୁଁ ପକେଟ୍ କାଟିବି କାହାର ?

ତରୁଣ : ଏଁ । ପକେଟ୍ ମାର ?

ନେତା : ଆବେ ଏ ପକେଟ୍ ମାର ! ତୋର ତ ଭାରି ସାହସ ।

ଚଟାପଟ୍ : ଓ ବାବୁ ! ଚୁପ୍‌କି ବସ । ଭୋଟର ଲିଷ୍ଟରେ ମୋ ନାଁ ବି ଅଛି । ମୋତେ ବି ଭୋଟ ଦେଇଆସେ ।

ହାରକିନ : ଆଜ୍ଞା, ଟିକିଏ ସହି ଯାଆନ୍ତୁ । ଭୋଟ ଖଣ୍ଡିକ ଗଲିଯିବ ।

ନେତା : ହଁହଁ ଆଚ୍ଛା ଆଚ୍ଛା, ଆରେ ଏ ତୁ ଏମିତି ରାଗୁଛୁ କାହିଁକି ? ଆସ ବସବସ ।

ଚଟାପଟ୍ : ସେଇ କଥା କୁହ । (ବସିଲା ଝପ୍‌ପଟ ଆସେ)

ଝପ୍‌ପଟ : ମୁଁ ଠାକୁର ଝପ୍‌ପଟ ସିଂ । ମୁଁ ବସିବା ଶିଖିନି । ଆଉ ସବୁ କଥାରେ ଭୁଲିବା ଲୋକ ମୁଁ ନୁହେଁ । ମୋ ନାଁ ଶୁଣିଲେ ଏ ସହର ଥରେ । ମୋ ସାମ୍‌ନାରେ ମୁହଁ ଉଠେଇ କଥା କହିବାକୁ ପୁଲିସ୍ S.P. କ'ଣ D.G. ବି ସାହସ କରେନି । ତୋର ସାହସକୁ ତାରିଫ୍ କରିବାର ଅଛି ହାରକିନ ଦାସ । କ'ଣ ନା, ଗୁପ୍ତା ମାରୁଆଡ଼ି ଡ୍ରାମା ଦେଖି ଆସିବ । ଏଇ ସୁଯୋଗରେ ମୁଁ ତା' ଘରେ ଡକାୟତି କରିବି । ମୁଁ

ଶଳା ବୁଡ଼ବକ୍ ତୋ କଥାକୁ ଭରସା କରି ଜିପ୍, ଘୋଡ଼ା, ବନ୍ଧୁକ, ବୋମାସବୁ ଭଡ଼ାରେ ଆଣି ଜଗିଲି । ଏଣେ ଦେଖିଲା ବେଳକୁ ତୋ ଡ୍ରାମା ବନ୍ଦ ।

ହାରକିନ : ଏ କଥା କ'ଣ କି ଝପପଟବାବୁ !

ଝପ୍ପଟ : ହାଟ୍ ବେ, ସେ ବାବୁ ଫାବୁ କହନା । ଯଦି କହିବୁ କହ ଠାକୁର ଝପ୍ପଟ୍ ସିଂ ।

ନେତା : ହଉ ହେଲା । ଠାକୁର ଝପ୍ପଟ ସିଂ ଟିକିଏ ଅପେକ୍ଷା କର ।

ଝପ୍ପଟ : ଆରେ ତୁ ? ତୁ ମନ୍ତ୍ରୀ, ନୁହେଁ ?

ନେତା : ନାନା ହେଇନି । ତମେ ନାଇଁ ନାଇଁ ଆପଣ ରହିଁଲେ....

ଝପ୍ପଟ : ତୁ କହ ତୁ

ନେତା : ହଉ ହେଲା । ତୁ ରହିଁଲେ ମୁଁ ମନ୍ତ୍ରୀ ହୋଇପାରନ୍ତି ।

ଝପ୍ପଟ : ମୁଁ ରହିଁଲେ ତୁ ମନ୍ତ୍ରୀ ହେବୁ ।

ନେତା : ଆସନ୍ତୁ ଆସନ୍ତୁ ଆସ ନାଇଁନାଇଁ ଆ ବସ୍ ।

(ଟାଣିନେଇ ପାଖରେ ବସାନ୍ତି । ତରିତରି ଛାନିଆରେ ଗୁପ୍ତା ଦୌଡ଼ିଆସେ ।)

ଗୁପ୍ତା : ଆରେ ଆରେ ହାରକିନଜୀ ! ୟେ କ୍ୟା ଗଜବକୀ ବାତ୍ ? ମୁଝେ ୟହାଁ ବୋଲ୍‌ୱାୟା ଉଧର ଡାକୁ ଝପ୍ପଟ ସିଂକୁ ମେରେ ଘରପର୍ ଭେଜ୍ ଦିଆ ।

ନେତା : ଆଇଏ ଆଇଏ ଗୁପ୍ତାଜୀ ।

ଗୁପ୍ତା : ଆରେ ଭାଇ ନେତାଜୀ ! ମୁଝେ ବଚାଲୋ ।

ଝପ୍ପଟ : ଓ ତୁ ତାହେଲେ ସେହି ଗୁପ୍ତା ମାରୁଆଡ଼ି ନୁହେଁ ?

ଗୁପ୍ତା : ନେହିଁ ନେହିଁ ଜୀ ସରକାର ।

ନେତା : ଓ ହ ଆଇଏ ବୈଠିଏ ।(ଗୁପ୍ତା ତରିତରି ବସେ, ମେନେଜର ଆସେ)

ମେନେଜର : ହଇଓ ହାରକିନବାବୁ ! ଇଏ କ'ଣ, ତମେ ମୋତେ ଏତେ କଥା କହିଲ ବହୁତ ବଡ଼ ଡ୍ରାମା । ବହୁତ ବଡ଼ ପ୍ରୋଗ୍ରାମ୍ । ବହୁତ ବଡ଼ ବିଜ୍‌ନେଶ୍ ବହୁତ ଟଙ୍କା ଉଠିବ । ମୋ ବେଙ୍କ୍‌ରେ ଗୋଟେ ଏଫ୍.ଡ଼ି. ଖୋଲିବ ।

ହାରକିନ : ମୁଁ କ'ଣ ନାଇଁ କରିଛି ? ଟିକିଏ ଧୈର୍ଯ୍ୟ ଧରନ୍ତୁ ।

ମେନେଜର : ଏଠିକାର ଯାହା ଅବସ୍ଥା ଏଠି କାହାର ଧୈର୍ଯ୍ୟ ରହିବ କହିଲ ?

ଗୁପ୍ତା : ଜୀ ମେନେଜର ସାବ୍ ଆଇଏ ଆଇଏ । ସାବ୍ ୟେ ମେରା ବେଗ୍ ହେ । ସାବ୍ ଥୋଡ଼ା ମୁଝେ ବଚାଇଏ ।

ଝପ୍‌ପଟ : ନେହିଁ ତୋ ଝପ୍‌ପଟ ସିଂ ଲେ ଯାଏଗା । (ବେଗ୍ ଧରିନିଏ)

ହରବର : ଝପ୍‌ପଟ ସିଂ ବହୁତ ଦିନ ପରେ ଖୁବ୍ ସହଜରେ ତୁ ଆଇନ୍ ହାତରେ ଧରା ପଡ଼ିଛୁ । ଆଜି ଏ ଶହଶହ ଲୋକ ସାମ୍ନାରେ ତୋତେ arrest କରି ବିଚ୍ ରାସ୍ତାରେ ଚଲେଇ ଚଲେଇ ନେବି ।

ଝପ୍‌ପଟ : ଇନ୍ସପେକ୍ଟର : ଝପ୍‌ପଟ ସିଂ ଏମିତି ମାମୁଲି ଡାକୁ ନୁହେଁ ଯେ ତାକୁ ଗୁଲ୍‌ବାଡ଼ି ହଲେଇ ଥାନାକୁ ନେଇଯିବୁ ।

ହରବର : ଝପ୍‌ପଟ ସିଂ ! (ଓଠରେ ଗୁଲ୍‌ବାଡ଼ି ଲଗେଇ freeze)

(ଚଟାପଟ୍ ଇତ୍ୟବସରରେ ଗୁପ୍ତା ପକେଟ୍‌ରୁ ରୁମାଲଟି ନେଇ ଖସିଯାଉଥିଲା । ହରକତ୍ ପହଞ୍ଚି ଧରନିଏ ।)

ହରକତ୍ : ଆବେ ଚଟାପଟ୍ । ଇଏ ହରକତ୍‌ର ଆଖିଟି ।

ହାରକିନ : ଆଜ୍ଞା ଏ ପରିସ୍ଥିତିରେ ଆଉ ନାଟକ କ'ଣ ହେବ ? (ହଠାତ୍ ଓକିଲ ଅଜ୍ଞାନ ଆଚର୍ଯ୍ୟ ଉଠି ଆସନ୍ତି ।)

ଅଜ୍ଞାନ : ସେ ଡେଲାଡେଲି କଥା ଛାଡ଼ । ନାଟକ କରିବାକୁ ପଡ଼ିବ ।

ତରୁଣ : ହଁହଁ ନାଟକ ହେବ ।

ଅନ୍ୟମାନେ : ଅଲବତ୍ ହବ ।

ହାରକିନ : ମାନେ ?

ତରୁଣ : ଆପଣ ଆମକୁ ଟିକେଟ୍ ବିକିଛନ୍ତି । ନାଟକ ଦେଖେଇବେ । ଆଉ ଆମେ ଟିକେଟ୍ କିଣିଛୁ ମାନେ ନାଟକ ନ ଦେଖି ଛାଡ଼ିବୁନି ।

ଅନ୍ୟମାନେ : ହଁ ହଁ

ହାରକିନ : ତାହେଲେ ନାଟକ ହେବ ।

ଅନ୍ୟମାନେ : କେମିତି ହେବ ?

ହାରକିନ : ଯେମିତି ହେବା କଥା ସେମିତି ହେବ । ଅର୍ଥାତ୍ ଏ ମଂଚ ହେଉଛି ଆମ ପ୍ରିୟ ସହର । ଆଉ ଏ ସହରର ବିଶିଷ୍ଟ ଚରିତ୍ରମାନେ ଆପଣମାନେ । ଆପଣମାନଙ୍କୁ ସିଧାସିଧା ମଂଚକୁ ଉଠେଇ ଆଣି ଏ ଲୋକମାନଙ୍କ ସାମ୍ନାରେ ପ୍ରଦର୍ଶିତ କରାଇବା ପାଇଁ ମୁଁ ଗୋଟେ ମାନେ....ହାରକିନ ଦେଖେଇବାର ଯୋଜନା କରିଥିଲି ଏବଂ ବାଛିବାଛି ଆପଣମାନଙ୍କୁ ଟିକେଟ୍ ବିକିଥିଲି । ଆପଣମାନେ ଏ ଜନତାର ଏ ସହରର କି କାମ କରିପାରୁଛନ୍ତି ତାହା ସମସ୍ତେ ଦେଖିବୁ । ଚାଲନ୍ତୁ ନିଜନିଜ ଚରିତ୍ରକୁ ସଫଳ ଭାବରେ ପ୍ରଦର୍ଶିତ କରାନ୍ତୁ । ହଁ ଚାଲନ୍ତୁ ।

ନେତା : ହଇଓ ହାରକିନ୍ ! ତମେ ଶେଷରେ ଆମକୁ ନେଇ ହାରକିନ ଦେଖେଇଲ ।

ହାରକିନ : କ'ଣ କରିବି ଆଜ୍ଞା ! ଆପଣମାନେ ତ ଅଭିନୟ ପାଇଁ କେବେ ରାଜି ହୁଅନ୍ତେନି । ତେଣୁ ଏମିତି ଏକ ହାରକିନ ଜରିଆରେ ଆପଣଙ୍କୁ ମଂଚକୁ ଉଠେଇ ଆଣିଲି ।

ନେତା : ହଇଓ ଆମେ ରାଜନୀତିବାଲା । ଆମକୁ ଏ ବାଜେ ଧନ୍ଦାରେ ପୂରେଇ ଆମର ସମୟ ନଷ୍ଟ କରୁଛ କାହିଁକି ?

ହାରକିନ : ଆଜ୍ଞା ! ଆଜିକାଲି ଯେତେବେଳେ ବଡ଼ବଡ଼ ଅଭିନେତା, ଅଭିନେତ୍ରୀମାନେ ରାଜନୀତିରେ ପଶି ଇଏମାନେ କେତେ ନା କେତେ ହାରକିନ ଦେଖେଇ ମାତ୍ କରିଦେଉଛନ୍ତି । ଆପଣ ରାଜନୀତିବାଲା

ଏମିତି ଥରେ ଅଧେ ଅଭିନୟ ମଂଚରେ ପଶିଗଲେ ମଂଚ ତ ଧନ୍ୟ ହୁଅନ୍ତା । ଆପଣଙ୍କ କେରିଏର୍ ବି ଚମକି ଯାଆନ୍ତା । ଥରେ ଦେଖେଇ ଦିଅନ୍ତୁ ନା ।

ଝପ୍‌ପଟ : ଆରେ ସିଏ ନେତା ଦେଖେଇବେ । ଆମର ଏଥିରେ କ'ଣ ମିଳିବ ।

ହାରକିନ୍ : ଆରେ ଭାଇ ଝପ୍‌ପଟ ତମେ ଅଂଧାରରେ ଡକାୟତି କରୁଛ । ତମର ପ୍ରତିଭା ଏଠି ପ୍ରଦର୍ଶିତ ହେଉ । ପୁଲିସ୍‌ଭାଇ ତମେ କେମିତି ଚୋର ଧରୁଛ । ତମର ପ୍ରତିଭା ଏଠି ପ୍ରଦର୍ଶିତ ହେଉ । ଚଟାପଟ୍ । ତମେ କେମିତି ପକେଟ୍ କାଟୁଛ । ଗୁପ୍ତାଜୀ ତମ ବିଜ୍‌ନେଶ୍ କେମିତି ଚାଲିଛି । ଆଉ ଓକିଲସାର ଆପଣଙ୍କ ଓକିଲାତିର କରିସ୍‌ମାକୁ ନେଇ ମୋର ଏ ନାଟକ । ଜଣେ ଅଭିନେତାଠାରୁ ପ୍ରକୃତ ଚରିତ୍ର ନିଶ୍ଚିତ ଭାବରେ ଜୀବନ୍ତ କରି ତୋଳିପାରିବ । ତେଣୁ ହେ ମୋର ନାଟକର ଜୀବନ୍ତ ଚରିତ୍ରମାନେ । ଆସନ୍ତୁ ନାଟକ କରନ୍ତୁ । ମୋ ନାଟକର ନାୟକ ଆଜି ଆମ ଜାତୀୟ ଚରିତ୍ରର ମୁଖ୍ୟ ଉତ୍ସ ଜଣେ ଯୁବକ ତରୁଣ ।

ତରୁଣ : ନା, ମୁଁ କୌଣସି ହାରକିନରେ ବିଶ୍ୱାସ କରେନି । ମୁଁ ନିଜକୁ ଜଣେ ଚରିତ୍ର ଭାବରେ ପ୍ରତିଷ୍ଠା କରିପାରିନି ମାନେ ଏଠି ଅଭିନୟ କରିପାରିବିନି ।

ହାରକିନ : ଆରେ ବାପା ତରୁଣ ! ତମେ ଆଜି ଏ ନାଟକର ହିରୋ ହେବ ।

ତରୁଣ : ନା, ମୁଁ ନେତା ନୁହେଁ ଯେ ତୁମ ନାଟକ ଜରିଆରେ ନିଜର ପ୍ରଚାର କରିବି । କି ମୋର ବିଜିନେଶ୍ ନାହିଁ ଯେ ତମ ମଂଚ ଉପରେ ମୋ ଜିନିଷର ବିଜ୍ଞାପନ ଦେବି । ମୁଁ ମଧ୍ୟ ପୁଲିସ୍ ନୁହେଁ ଯେ ସତରେ ଚୋରଧରି ନପାରି, ଏଠି ଚୋର ଧରିବାର ଅଭିନୟ କରିବି କି ଚୋର ନୁହେଁ ଯେ ପବ୍ଲିକ୍‌କୁ ଡରି ତମ ମଂଚ ପରଦା ତଳେ ଲୁଚି ବୁଲିବି । ମୁଁ ଜଣେ ଯୁବକ । ମୋ ବାହୁରେ ଶକ୍ତି ଅଛି । ମୁଁ କାମ କରିବି । ଆଉ ଟିକେଟ୍ କିଣିଛି ଯେତେବେଳେ ନାଟକ ଦେଖିବି । (ସିଧା ଦର୍ଶକ ମହଲକୁ ଫେରିଯାଏ ।)

ଅନ୍ୟମାନେ : ଆରେ ଆରେ ।

ହାରକିନ୍ : ଅମାନିଆ ପିଲାଟା - ଚାକିରି ପାଇନି ତ, ଟିକିଏ ଅଭିମାନୀ ହୋଇଯାଇଛି । ହିରୋ ରୋଲଟା କରିଥାଆନ୍ତା ହଉ ଯାଉ । ହିରୋଟା ନହେଲେ ମୁଁ କରିଦେବି । ଆପଣମାନେ ଭିତରକୁ ଚାଲନ୍ତୁ । ନାଟକ କରନ୍ତୁ । ଦେଖିବେ ଆପଣମାନେ କେମିତି ଲୋକପ୍ରିୟ ହେବେ । ଚାଲନ୍ତୁ ଚାଲନ୍ତୁ ।

ନେତା : ହେଲେ ତମ ନାଟକ ତ ଆମେ କରିବା । ଆବଶ୍ୟକ ପଡ଼ିଲେ ତମ ନାଟକର ଭୁଲ୍ ସୁଧାରି ଦବା ।

ହାରକିନ : ସେଥିପାଇଁ ତ ମୋର ଏ ହାରକିନ । (ଠେଲିଠେଲି wings ଭିତରକୁ ଛାଡ଼ିଦିଏ) ଆଜ୍ଞା କ୍ଷମା କରିବେ । ଆଉ ଗୋଟିଏ ଚରିତ୍ର ମୋର ଲୋଡ଼ା । ସେ ଚରିତ୍ରଟା ନହେଲେ ନାଟକ ତ ଜମିବନି । ତା'ଛଡ଼ା ମୋର ଭଉଣୀମାନେ ନାରୀସଂଘ, ମହିଳାସଂଘ କର୍ମକର୍ତ୍ତୀମାନେ ଭାବିବେ, ଏତେବଡ଼ ନାଟକୀୟ କାର୍ଯ୍ୟକ୍ରମ ଅଥଚ ମହିଳା ପ୍ରତିନିଧି ନାହାନ୍ତି । ଅଛନ୍ତି ଅଛନ୍ତି ଆଜ୍ଞା ରାଷ୍ଟ୍ର ନୀତିନିୟମ ଅନୁଯାୟୀ ଏ ନାଟକରେ ଯଦିଓ ତେତିଶପର୍ସେଣ୍ଟ ମହିଳା ନାହାନ୍ତି ସଂକୋଚବୋଧ କରୁଥିବେ । ଏବେ ମୁଁ ଏକାକୀ ମଂଚରେ ତାଙ୍କୁ ଡ଼ାକୁଛି । ସେ ଆସନ୍ତୁ, ହଁ ଆସନ୍ତୁ । ଯଦି ନ ଆସିବେ ଏ ନାଟକରୁ ମହିଳା ଚରିତ୍ର ବାଦ୍ ଦେବାକୁ ବାଧହେବି । ଯାଦ୍ୱାରା ମହିଳା ମହଲର ପ୍ରେଷ୍ଟିଜ୍ ତ ଯିବ ତା' ଛଡ଼ା ମହିଳାମାନେ ନାଟକରେ ନିଜର ପ୍ରତିନିଧିତ୍ୱ ଦେବାର ସୁଯୋଗରୁ ବଂଚିତ ହେବେ । ଆସନ୍ତୁ ନା । (ଭାରତୀ ପଶି ଆସେ)

ଭାରତୀ : କ'ଣ କିହୋ ହାରକିନ ! ତମେ ଭାବିଛ ତମକୁ ଏକା ହାରକିନ ଦେଖେଇ ଆସେ ।

ହାରକିନ : ଆରେଆରେ ଭାରତୀ ! ତମେ ?

ଭାରତୀ : କ'ଣ ଚମକିପଡ଼ିଲ ?

ହାରକିନ : ନାନା ତମେ ପରା ଏ ସହରରେ ରହୁନ ?

ଭାରତୀ : ଅବଶ୍ୟ ସବୁବେଳେ ରହୁନି, ଆଜି ତ ଅଛି । ଆଉ ମୋ ସାମ୍ନାରେ ତମେ ନାରୀ ଚରିତ୍ରକୁ ନାଟକରୁ ବାଦ୍ ଦେଇଦେବ ମୋ ଦେହ ସହିବ ? ମୁଁ କ'ଣ ଚୁପ୍‌ଚାପ୍ ଶୁଣିଯିବି ? ନା ତେଣୁ ବାଧ ହେଲି ମଂଚ ଉପରକୁ ଆସିବାକୁ ତା'ଛଡ଼ା ଏଠି ରହୁଥିଲେ କ'ଣ ମୋତେ ଡାକି ଥାଆନ୍ତ ?

ହାରକିନ : ନାଇଁ କଥା କ'ଣ କି.....

ଭାରତୀ : ଖାଲି ତମେ ନୁହେଁ ହାରକିନ୍ । ଏ ସମାଜଟା ଏମିତି । ବୟସ ଥିଲାବେଳେ ସମସ୍ତେ ପଚାରନ୍ତି । ବୟସ ଚାଲିଗଲେ, ଦେହରୁ ରଙ୍ଗ ଛାଡ଼ିଗଲେ କେହି ଆଡ଼ ଆଖିରେ ବି ଚାହାଁନ୍ତିନି । ତମେ ବା କ'ଣ କରିବ ?

ହାରକିନ : ନା ନା ଭାରତୀ ! ଏ ନାଟକର ଚରିତ୍ରଟା ଟିକିଏ....

ଭାରତୀ : ମୁଁ କ'ଣ ପାରିବିନି ? ମୁଁ ପରା ତମରି ନାଟକରେ ହିରୋଇନ୍ ହୋଇଛି । ଭଉଣୀ ରୋଲ୍ କରିଛି । ଉର୍ବଶୀ ମେନେକାଠୁ, ସୀତା ସୁର୍ପନଖା ଯାଏଁ କେତେ ନା କେତେ ରୋଲ କରିଛି । ତମର ମୋ ଉପରେ ଭରସା ନାହିଁ ।

ହାରକିନ : ନାଇଁ ତମର ଏ ଧଳାଚୂଳ....

ଭାରତୀ : ଅଭିନେତ୍ରୀ ମୁଁ । କଳାଚୂଳକୁ ଧଳାକରି ତମର ମାଆ ରୋଲ କରୁଥିଲା ବେଳେ ଆନନ୍ଦରେ ହସିହସି ଗ୍ରହଣ କରୁଥିଲ । ଆଜି ନହେଲେ ଧଳାଚୂଳରେ ରଙ୍ଗ ମାରି କଳା କରିଦେଲେ କ'ଣ ଗ୍ରହଣ କରିବନି ?

ହାରକିନ : ହଉ ଦେଖିବା ଚଳେଇ ନବା ।

ଭାରତୀ : ପ୍ଲିଜ୍ ଆଜି ଏଇମିତି ଏକ ପେଣ୍ଡାଲରେ ମୋତେ ଟିକିଏ ସୁଯୋଗ ଦିଅ ହାରକିନ । ମୁଁ ମୋ ଜୀବନର ଶ୍ରେଷ୍ଠତମ କଳା ପ୍ରଦର୍ଶନ କରିବାର ଗୌରବ ଲାଭ କରେ ।

ହାରକିନ : ହଉ ହେଲା । ଏ ତ ଆମ ସମସ୍ୟାର ସତ ସତିକା ନାଟକ । ଏଥିରେ ତମେ ମଧ୍ୟ ସାମିଲ ହୋଇଯାଅ ।

ଭାରତୀ : କିନ୍ତୁ, ତମ ଲେଖା dialogueରେ ମୋତେ ବାନ୍ଧି ଦବନି । ମୁଁ ମୋ ଜୀବନର ଅରମାନ ଭରା dialogue କହିବି । ମୁଁ ଏ ମଂଚରେ ସ୍ୱଚ୍ଛନ୍ଦରେ ସ୍ୱାଧୀନ ଭାବରେ ବିଚରଣ କରିପାରିବି ।

ହାରକିନ : ନିଶ୍ଚୟ, ତାହା ତ ଏକ ନାଟକ । କିନ୍ତୁ ଏମାନେ ସମସ୍ତେ ଏ ସମାଜର ଜୀବନ୍ତ ଚରିତ୍ର । ଏମିତି ଅଭିନୟ କରିବ, ଯେମିତି କି ସେମାନଙ୍କର କୌଣସି ଅସୁବିଧା ନହୁଏ ।

ଭାରତୀ : ତମେ ଖାଲି ଦେଖୁଥାଅ ହାରକିନ । ମୁଁ କାହାକୁ କେମିତି ଭାବରେ ଚିତ୍ରଣ କରୁଛି ।

ହାରକିନ : ତାହେଲେ ଆସ·ତମକୁ introduce କରିଦିଏ । ଇଏ ହେଉଛନ୍ତି ଆମ ସହରର ଜଣେ ଖ୍ୟାତନାମା ଅଭିନେତ୍ରୀ ।

ଭାରତୀ : ଭାରତୀ ସାହୁ ।

ହାରକିନ : ତା'ହେଲେ ତମ ଭୂମିକା ।

ଭାରତୀ : ମୋ ଭୂମିକା ମୁଁ ନିଜେ । ହେଲେ ତମ ହିରୋ ?

ହାରକିନ : ଦେଖିବା, ତମେ ଯେତେବେଳେ ନାୟିକା ହେଲଣି ମୁଁ ନାୟକ ହେଲେ କ୍ଷତି କ'ଣ ?

ଭାରତୀ : ନା, ମୁଁ କଳାକୁ ନେଇ କେବେବି ଲାଭକ୍ଷତିର ହିସାବ କରିନି । ମୁଁ କେବଳ କଳାର ଆରାଧନା ହିଁ କରିଛି ।

ହାରକିନ : ତାହେଲେ ଆରମ୍ଭ କରିବା ?

ଭାରତୀ : ଆଉ ପରିବାର ଅଛି ?

ହାରକିନ : ଆଜିର ନାଟକ (ଘୋଷଣା କରିବା ସମୟରେ ଭାରତୀ ଦର୍ଶକଆଡ଼କୁ ଯାଉଥିବାର ଦେଖି) ଇଏ କ'ଣ green room ତ ଏପଟେ ।

ଭାରତୀ : ମୋ green room କିନ୍ତୁ ସାମନାରେ ।

ହାରକିନ : ସାମନାରେ ?

ଭାରତୀ : ହଁ, ଏତେଦିନ ଧରି ମୁଁ ଏ ମଂଚରେ ନାଚିଲି, ଗାଇଲି । ସେମାନେ ତାଳିମାରି ମୋ ଉପ୍ରରକୁ ପଇସା ଗଣ୍ଡାଏ ଫୋପାଡ଼ି ଦେଇ ନିଜ ସଉକ ମେଣ୍ଟାଇ ଗଲେ । ଆଜି ଯେତେବେଳେ ସେମାନେ ମୁହଁରେ ରଂଗ ମାରି ଏ ମଂଚ ଉପରକୁ ଉଠିଆସିଲେଣି, ମୁଁ ମୋ ସଉକ ମେଣ୍ଟାଇବିନି ?

ହାରକିନ : କିନ୍ତୁ ଏ ନାଟକ

ଭାରତୀ : ବ୍ୟସ୍ତ ହୁଅନି ହାରକିନ । ଏ ନାଟକରେ ମୋ ଚରିତ୍ର ମୁଁ ବାଛି ସାରିଲିଣି ।

ହାରକିନ : ତମ ଚରିତ୍ର ?

ଭାରତୀ : ହଁ ତାଙ୍କରି ଚରିତ୍ରରେ ତାଙ୍କରି ସାମନାରେ ମୁଁ ଅତି ସ୍ୱଚ୍ଛନ୍ଦରେ ଅଭିନୟ କରିବି । ଆଉ ଯେତେବେଳେ ଆବଶ୍ୟକ ହେବ ମୁଁ ମଂଚ ଉପରକୁ ନିଶ୍ଚୟ ଆସିବି ।

ହାରକିନ : ହେଲେ.....

ଭାରତୀ : ତମେ ବଚନବଦ୍ଧ ହୋଇସାରିଛ ହାରକିନ୍ । ଏ ଦର୍ଶକ ଆଗରେ ତମେ ମୋତେ କଥା ଦେଇସାରିଛ । ମୁଁ ମୋ ମନ ମୁତାବକ ଅଭିନୟ କରିବି । ଆଉ ମୁଁ କଥା ଦଉଛି ତମକୁ ଅସୁବିଧାରେ ପକେଇବିନି । ଆଜି ଅଭିନୟକୁ ସତରେ ଏବଂ ବାସ୍ତବତାକୁ ଅଭିନୟରେ ପରିଣତ କରିବି । ତମେ ଯାଅ ଆରମ୍ଭକର ।

ହାରକିନ : ଆରମ୍ଭ......

ଭାରତୀ : ହଁ, ମୁଁ ଏଇଠି ତମ ସାମନାରେ ଅଛି । ଆବଶ୍ୟକ ସମୟରେ ନିଶ୍ଚୟ ଆସିବି ।

ହାରକିନ : ହେଲା, ବାଧହୋଇ ମୁଁ ଏ ନାଟକରେ ହିରୋ ଅର୍ଥାତ୍ ଜଣେ ଚୋର ଭୂମିକାରେ ଅଭିନୟ କରୁଛି ।

ଭାରତୀ : ଚୋର ?

ହାରକିନ : ହଁ, ଚରିତ୍ରର ନାଆଁ ତସ୍କର । (ଟୋପି ପିନ୍ଧନ୍ତି ।)

– ଅନ୍ଧାର –

## ପର୍ଯ୍ୟାଲୋଚନା ପର୍ବ

(Left Zone ଏକ ଥାନା । ଇନ୍‌ଚାର୍ଜ ହରବର ମାରାଣ୍ଡି ବସି ଫାଇଲ ଦେଖୁଥାନ୍ତି । ଗୁପ୍ତା ପାଟି କରିକରି ଆସନ୍ତି ।)

ଗୁପ୍ତା : ମେ ମରଗୟା, ମେ ବରବାଦ ହୋଗୟା ଦାରୋଗାଜୀ । ମୁଝେ ବଚାଲୋ ଦାରୋଗାଜୀ ।

ହରବର : ଏଁ ! ଗୁପ୍ତା ମାରୁଆଡ଼ି ! ଯା ହଉ ଆଜିର ଖର୍ଚ୍ଚଟା ଉଠିଯାଉ । (ନିଜକୁ ପ୍ରସ୍ତୁତ କରେଇ) ହଁ କିସ୍ ହୁଆ ।

ଗୁପ୍ତା : ନମସ୍ତେ ନମସ୍ତେ ଦାରୋଗାଜୀ ।

ହରବର : ହୁଁ ନମସ୍ତେ । (ଲେଖିବାର ଅଭିନୟ କରନ୍ତି) କିସ ହେଇଛି ।

ଗୁପ୍ତା : ମେ ଲୁଟଗୟା ଦାରୋଗାଜୀ । ମେ ବରବାଦ ହୋ ଗୟା ।

ହରବର : ଓ ହୋ ସାଫ୍ ସାଫ୍ କୁହ କିସ ହୁଆ ?

ଗୁପ୍ତା : ମେ ଇସ୍‌ଟେସନ୍‌ସେ ମୋତିଗଂଜ ଯା ରାହାଥା । ରାସ୍ତେମେ ଏକ ଚୋର ଆକର ମେରା ସତ୍ୟାନାଶ କରଦିଆ ।

ହରବର : ଓ ଚୁରୀ ! କିସ୍ ଚୁରୀ ହୁଆ ?

ଗୁପ୍ତା : ମେରା ଜାନ୍‌ସେ ପ୍ୟାରା ବଟୁଆ ।

ହରବର : ବଟୁଆ ମେ କିସ ଥିଲା ?

ଗୁପ୍ତା : ୟେ ମତ୍ ପୁଛୋ ଦାରୋଗାଜୀ ! ଇସ୍‌ମେ ମେରା ଜାନ୍ ଥା ।

ହରବର : ହଁ ଆପଣଙ୍କ ବଟୁଆ କହାଁ ଚୁରୀ ହେଲା ?

ଗୁପ୍ତା : ଯେ ତୋ ମୁଝେ ମାଲୁମ୍ ନେହିଁ । ଲେକିନ୍ ରାସ୍ତେ ମେ ଜରୁର ହୁଆ ।

ହରବର : ହୁଁ ଆପଣଙ୍କ ନାମ ?

ଗୁପ୍ତା : ମକୁଭାଇ ଛକାରାମ ଗୁପ୍ତା ।

ହରବର : ହୁଁ ଏଇଠି sign କରିଦିଅ ।

ଗୁପ୍ତା : (sign କରନ୍ତି)

ହରବର : ଠିକ୍ ହୈ ଯାଆନ୍ତୁ ।

ଗୁପ୍ତା : ଲେକିନ ମେରା ବଟୁଆ ?

ହରବର : ପତ୍ତା ମିଳିଗଲେ ହମ୍ ଆପଣଙ୍କୁ ଖବର କରିଦେବା ।

ଗୁପ୍ତା : ଲେକିନ ଦାରୋଗାଜୀ ! ଥୋଡ଼ା ଜଲଦୀ ।

ହରବର : ଉଁ ହୁଁ ଜଲଦୀ କରିବାର କିଛି ବାତ୍ ନେହିଁ । ଆପଣ ଯାଇଏ ।

ଗୁପ୍ତା : ଲେକିନ୍ ଦାରୋଗାଜୀ ।

ହରବର : ଓ ହ ! ଚୁର ଧରାହେଲେ ବଟୁଆ ମିଳିଯିବ ।

ଗୁପ୍ତା : ଦାରୋଗାଜୀ ! ମେରା ବାତ୍ ତୋ ପହଲେ ଶୁନୋ ।

ହରବର : ମେତ ପ୍ରଥମ ସେ ଆପଣଙ୍କ ବାତ୍ ହିଁ ଶୁଣତା ହୁଁ ।

ଗୁପ୍ତା : ମେ ମେରାସାଥ୍ ଚୋର ପକଡ଼ କରଲାୟା ହୁଁ ।

ହରବର : ଏଁ ! ଆପଣ ଚୁର ପକଡ଼ କର ଲାୟା ।

ଗୁପ୍ତା : ହଁ ।

ହରବର : ଯେ ତୁମ୍‌କୋ କିସନେ କହା ? ଆପଣ ଯଦି ଚୁର ଧରିବ, ପୁଲିସବାଲା କିସ ମାଛ ଧରିବ ନା ବାଦୁଡ଼ି ଧରିବ ? କାହାଁ ଚୁର କାହାଁ ?

ଗୁପ୍ତା : ଯହାଁ ତ ଥା କାହ୍ବା ଗୟା ? ହଁ, ଏ ଭାଇ ଆରେ ଭାଇ ! ଅନ୍ଦର ଆଓ । (ତସ୍କର ଆସେ ବଟୁଆ ଧରି)

ତସ୍କର : ନମସ୍କାର ଆଜ୍ଞା !

ହରବର : ଆବେ ତୁ ? ତୁ ପୁଣି ଚୁରୀ କଲୁ ? ବେ ସେଦିନ ପରା ଗାଈ ଲାଞ୍ଜ ଛୁଇଁ ପ୍ରତିଜ୍ଞା କରିଥିଲୁ, ଆଉ ଚୁରୀ କରିବୁନି ବୋଲି ?

ତସ୍କର : ମୁଁ ତ ଚୋରୀ କରିନି ।

ହରବର : କିସ କହିଲୁ ଚୁରୀ କରିନୁ ?

ତସ୍କର : ନାଇଁ ଆଜ୍ଞା ମୁଁ ଚୋରୀ କରିନି ।

ଗୁପ୍ତା : ଝୁଟ୍ ବୋଲତା ହେ ତୁମ୍ ଚୋର ହୋ ।

ତସ୍କର : ନାଇଁ ମୁଁ ସତ କହୁଛି ।

ଗୁପ୍ତା : ମେ ସଚ୍ ବୋଲତା ହୁଁ ।

ତସ୍କର : ମୁଁ ସତ କହୁଛି ।

ଗୁପ୍ତା : ମେ ସଚ ବୋଲତା ହୁଁ ।

ତସ୍କର : ମୁଁ ସତ କହୁଛି ।

ଗୁପ୍ତା : ମେ.....

ତସ୍କର : ମୁଁ.....

ଗୁପ୍ତା : ମେ....

ତସ୍କର : ମୁଁ....

ହରବର : ଓଃ ଚୁପ୍‌କର ।

ତସ୍କର : ଭୁଲ୍ ହୋଇଗଲା ।

ଗୁପ୍ତା : ମାଫ୍ କର ଦିଜିଏ ।

ହରବର : ଗୁପ୍ତାଜୀ ! ଆପଣ ବାହାରେ ବସନ୍ତୁ । ମେ ୟେ ଚୁରକୁ ଦେଖତା ହୁଁ ।

ଗୁପ୍ତା : ମେରା ଫିକର ମତ୍ କିଜିଏ ଦାରୋଗାଜୀ । ମେ ବାହାର୍ ହୁଁ ପର୍ ମେରା ବଟୁଆକୁ ଥୋଡ଼ା ଧ୍ୟାନ ଦିଜିଏଗା । (ଯାଆନ୍ତି)

ହରବର : ହାଁ ହାଁ ଯାଇଏ । ବେ ତୋତେ ମୁଁ ଅନେକଥର ଛାଡ଼ି ଦେଇଛି । ଏଥର ବି ଛାଡ଼ି ଦେଇପାରେ । ତୁ ତ ଜାଣୁ ମୁଁ ସତକୁ କେତେ ଭଲପାଏ ।

ତସ୍କର : ମୁଁ ସତ କହୁଛି ଆଜ୍ଞା ! ଏ ବଟୁଆ ମୁଁ ଚୋରୀ କରିନି ।

ହରବର : ଓ ହୋ ! ମୁଁ କିସ ତୋତେ ଚିହ୍ନିନି । ଖାଲି କେଶ୍‌ରେ ଫସିଲେ ଅଡୁଆରେ ପଡ଼ିବୁ । ସେଥିପାଇଁ କିସ କହୁଥିଲି କି, ତୁ ଗୋଟେ କାମ କର । ପକେଟରେ ଯାହା ଅଛି ପକେଇ ଦେଇ ପଳା ।

ତସ୍କର : ଆଜ୍ଞା !

ହରବର : ନହେଲେ ତୋ ନାଁରେ ଇମିତି ଚାର୍ଜସିଟ୍ ଲେଖିବି ଯେ ତୁ ଘରେ ବସିବସି ଘଣା ପେଲୁଥିବୁ ।

ତସ୍କର : ଆଜ୍ଞା ! ମୋ ପକେଟ୍ ଦେଖନ୍ତୁ । ଏ ବଟୁଆ ଛଡ଼ା ମୋ ପାଖରେ ଆଉ କିଛିନାହିଁ ।

ହରବର : ରଖ ବଟୁଆ ! ଯା ବାହାର ।

ତସ୍କର : ଆଜ୍ଞା

ହରବର : ଯାଉଛୁ ନା ଏଠୁ ଦେଖିବୁ ।

ତସ୍କର : ସାର୍ ।

ହରବର : ଗଲୁ ଏଠୁ । (ତସ୍କର ପଳାଏ ହରବର ବଟୁଆ ଧରି) ଆହା ! କେଡ଼େ ସୁନ୍ଦର ବଟୁଆଟେ । (ଗୁପ୍ତା ଦୌଡ଼ିଆସେ)

ଗୁପ୍ତା : ହାଁ ଦାରୋଗାଜୀ ! ମୋ ଉସ୍‌କୋ ବନାରସ ସେ ମଂଗଓ୍ୱାୟା ଥା ।

ହରବର : ଆପଣଙ୍କ ପାଖରେ କେଶ ମେମୋ ହୈ ?

ଗୁପ୍ତା : କେଶ ମେମୋ ? ୟେ ତୋ ଗଜବ ହୋଗୟା ?

ହରବର : ତୋ ୟେ କୈସେ ଆପଣଙ୍କର ହୋଗା ?

ଗୁପ୍ତା : ଲେକିନ୍ ଦାରୋଗାଜୀ ।

(ସ୍ତିମୀତ ଆଲୋକରେ କଥା ଭାଷା ଠରାଠରି ହୁଅନ୍ତି । ଶୁଣାଯାଏନି । Righ Zoneକୁ ଆଲୋକ ଆସେ । ଦେଖାଯାଏ ନେତାଙ୍କ ପାଖରେ ତସ୍କର ।)

ନେତା : ଏଁ ମୋ ଇଲାକାରେ ପୁଣି ଏତେ କଥା ହୋଇଗଲା ? ବାଘ ଘରେ ପୁଣି ମିରିଗ ନାଟ ? ପୁଲିସ୍ ହେଇଗଲା ବୋଲି କ'ଣ ଇନ୍ଦ୍ରଚନ୍ଦ୍ର ମାନିବନି ? ଏଁ ସେ ଆଉ ମନେମନେ କ'ଣ ବୋଲି ଭାବିଲାଣି କି ? କିନ୍ତୁ....ତମେ..... ? ତମକୁ ତ ମୁଁ ଚିହ୍ନି ପାରୁନି । ଅବଶ୍ୟ କୋଉଠି ଦେଖିଲା ପରି ମନେହେଉଛି । ହଁ ଦେଖିଛି । ନାଁଟା ଯାଉଛି ଆସୁଛି ।

ତସ୍କର : ମୋ ନାଁ ତସ୍କର ପଣ୍ଡା ।

ନେତା : ତସ୍କର ନାଁ ? ହଁ ହଁ ମନେପଡ଼ିଲା । ହରିପୁର ତସ୍କର ତ ?

ତସ୍କର : ନାଇଁ ସାର । ରାମପୁର ତସ୍କର....

ନେତା : ହଁ ହଁ ରାମପୁର ତ । କାମ ଭିଡ଼ରେ ସବୁ କ'ଣ ମନେପଡୁଛି ।

ତସ୍କର : ଗଲା electionରେ ମୁଁ ଆପଣଙ୍କ ପାଇଁ ଘରିଘରିଟା E.V.M. ଉଠେଇଆଣି ନଥିଲି ?

ନେତା : ଆଛା ଆଛା ! ହଁ ହଁ ତମେଇମାନେ ତ ଜୀବନକୁ ପାଣି ଛଡ଼େଇ ପୁଲିସ୍ ଘେର ଭିତରୁ E.V.M. ଉଠେଇ ଆଣିଥିଲ । ହଁ ହଁ ମୋର ଏବେ ମନେପଡ଼ିଲା.... ଆଃ ତମେ ମୋର ନିଜଲୋକ । ତମକୁ ସେ ପୁଲିସ୍‌ବାଲାଟା ହଇରାଣ କଲା । ଦଉଛି ଆଜି ମିନିଷ୍ଟରକୁ କହି ତାକୁ କୋରାପୁଟ ପଠଉଛି । (Dial କରୁକରୁ) କେତେ ଶୋଧିବ

ଏଗୁଡ଼ାଙ୍କୁ (ଥାନା zoneରେ ରିଂ ହେଲା) Hallow କିଏ ?.... ମାରାଣ୍ଡିବାବୁ ! .....ନିଜକୁ କ'ଣ ବୋଲି ଭାବୁଛ କି ? ଏଁ !.....ସେ ମାରୁଆଡ଼ିଠୁ କେତେଟଙ୍କା ନେଇଛ ? ଏଁ !....ମୁଁ କିଛି ଶୁଣିବିନି । ତମେ ଜାଣିଜାଣି ମୋ areaକୁ ଖରାପ କରୁଛ....ସେ ଲୋକଟି ମୋ ନିଜଲୋକ । ତମକୁ ଚବିଶଘଣ୍ଟା ଭିତରେ ଫୁଲବାଣୀ ପଠେଇବି । (ଥାନା zoneରେ ପୁଲିସ୍ ନେହୁରା ହେଉଥାଏ । ଗୁପ୍ତା ଛାନିଆ ହେଉଥାଏ ।) ହଁ ସେଇଆ କର । ନହେଲେ ବେଡ଼ିଂ ବାନ୍ଧି ଦିଅ । (ଫୋନ୍ ରଖି)ଯାଅ ଥାନାରୁ ନେଇଆସିବ ।

ତସ୍କର : ଆଜ୍ଞା !

ନେତା : ହଁ ପୁଣି election ଆସିଗଲା ।

ତସ୍କର : ଆମେ ଅଛୁ ସାର୍ ।

ନେତା : ଖାସ୍ ତମରିମାନଙ୍କ ପାଇଁ ମୁଁ election ଲଢୁଛି । ସାମାନ୍ୟ ଅସୁବିଧା ହେଲେ ସିଧା ଚାଲି ଆସିବ । ଗେଟ୍ ପାଖରେ କୁକୁର ଅଛି ଯେ ....ଡରିବନି....ସେ ଖାଲି ଭୁକେ, କାମୁଡ଼େନି ।

ତସ୍କର : ଆଜ୍ଞା, ନମସ୍କାର । (ତସ୍କର ଯାଏ)

(Right zoneରୁ light କମି Left zoneରେ Light ବଢ଼େ)

ହରବର : ମାଫ୍ କିଜିଏ ଗୁପ୍ତାଜୀ ! ଆପଣଙ୍କ ଏ ବନାରସୀ ବଟୁଆ...ଏକ ପଲଟିକାଲ ଇସୁ ହୋଗୟା....ମେ ନିରୁପାୟ....

ଗୁପ୍ତା : ପଲଟିକାଲ ପ୍ରେସର ?

ହରବର : ହଁ ନିଜେ ଦୁଃଖମୋଚନବାବୁ ଏ କେଶରେ ହାତ ଦେଲେଣି ।

ଗୁପ୍ତା : ଦୁଃଖମୋଚନବାବୁ ? କୋଇ ବାତ୍ ନେହିଁ ମେ ଚଲନ୍ତା ହୁଁ । ମେରା ଭି ପଲିଟିକାଲ ହେଣ୍ଡ ହୈ(ଯାଏ)

ହରବର : ଓ ରାମରାମ ହରକତ ! ଏ ହରକତ ! (ତସ୍କର ଆସେ) ଆରେ ତସ୍କର ! ତୋ ସହିତ ମୋର ଏତେଦିନର ସଂପର୍କ । ତୁ ମୋତେ

କହିଥିଲେ କ'ଣ ହେଇନଥାନ୍ତା ! ସିଧାସିଧା M.L.A.

(Left zoneରୁ light କମିଯାଇ Right zoneକୁ ଆସେ)

ନେତା : ଆରେ ଗୁପ୍ତାଜୀ ! ଆଇଏ ଆଇଏ

ଗୁପ୍ତା : ଲିଜିଏ, ଏକ ପାନ ଖାଇଏ ।

ନେତା : ପାନ ?

ଗୁପ୍ତା : ହଁ ବନାରସ କା ପାନ ମେ ବମ୍ବାଇକା ଚୁନା ଔର କାନପୁର କା ଧନିଆମେ କାଶ୍ମିରକି ଖଇନୀ ।

ନେତା : ଠିକ୍ ହୈ, ଠିକ୍ ହୈ । ଆମେ କେମିତି ମନେପଡ଼ିଲା ?

ଗୁପ୍ତା : ବାତ୍ ୟେ ହୈ କି ।

ନେତା : ଆପଣଙ୍କ ଚନ୍ଦା ଆମେ ଠିକ୍ ପାଇଯାଇଛୁ ।

ଗୁପ୍ତା : ଲେକିନ୍ ବାତ୍ ୟେ ହୈକି । ମେରା ଏକ ବନାରସୀ ବଟୁଆ ଚୋରୀ ହୋଗୟା ଥା ।

ନେତା : ଆପକା ବଟୁଆ ଚୋରୀ ହୋଗୟା । ଏ ପୁଲିସ୍‌ବାଲା....

ଗୁପ୍ତା : ଚୋର ପକଡ଼ା ଗୟା ।

ନେତା : ଚୋର ପକାଡ଼ା ଗୟା ? ତୋ ଠିକ୍ ହୈ ।

ଗୁପ୍ତା : ଲେକିନ୍ ମେରା ବଟୁଆ ମୁଝେ ନେହିଁ ମିଲତା ।

ନେତା : ବଟୁଆ ନେହିଁ ମିଲତା ? କହାଁ ହୈ ବଟୁଆ ?

ଗୁପ୍ତା : ଥାନା ମେ ହୈ ।

ନେତା : ଥାନା ମେ ? (Dial କଲେ) Hallow ! କିଏ ମାରାଣ୍ଡି ? ହଇ ହୋ ! ମୋତେ କ'ଣ କାମ କରେଇ ଦବନି ? (ଥାନା zoneରେ ତସ୍କରକୁ ବଟୁଆ ଦେବା ସମୟରେ ରିଂ ହେଲା । ଗୋଟେ ହାତରେ ରିସିଭର ଅନ୍ୟ ହାତରେ ବଟୁଆ ଧରି) ତମେ ଜାଣ ସେ ....ଗୁପ୍ତାଜୀ

ମୋର କେତେ ପାଖଲୋକ । ତାଙ୍କୁ ଏମିତି ହଇରାଣ କରୁଛ କାହିଁକି ?
....ମୁଁ କିଛି ଶୁଣିବିନି । ତାଙ୍କୁ ଶୀଘ୍ର ବଟୁଆ ଦିଅ ।(ରଖିଦେଲ)

ହରବର : ଶୁଣିଲୁ ତ ! ଯା ଯା ପଳା ତୋତେ ବଟୁଆ ମିଳିବନି ।

ଗୁପ୍ତା : ନମସ୍ତେ ସରକାର ।

ନେତା : ଯାଇଏ, ଲେକିନ୍ କଥା କ'ଣ କି ?

ଗୁପ୍ତା : ଚନ୍ଦା ? ଜରୁର୍ ମିଲ ଯାଏଗା ।

ନେତା : ଏ ଅପୋଜିସନ୍ ବାଲା ।

ଗୁପ୍ତା : ଆପ୍ ବେ ଫିକର୍ ରହିଏ । ହମାରା ଚନ୍ଦା ଆପ୍‌କୋ ଜେବ୍ ମେ ଜରୁର୍ ଆଏଗା ।

ନେତା : ଆପକା ଭୋଟ୍ ?

ଗୁପ୍ତା : ୟେ ବି ଆପ୍‌କା ଖାତା ମେ ।

ନେତା : ଯାଇଏ । ଅସୁବିଧା ହେଲେ ଜଣାଇବେ ।

ଗୁପ୍ତା : ଆପକା ବହତ୍ ବହତ୍ ମେହେରବାନି ।

(ଗୁପ୍ତା ଯାଏ ଥାନା zoneକୁ । ତସ୍କର ଫେରେ ନେତା zoneକୁ)

ଗୁପ୍ତା : ନମସ୍ତେ ଦାରୋଗାଜୀ ।

ହରବର : ଜୀ ନମସ୍କାର ।

ତସ୍କର : ନମସ୍କାର ସାର୍ ।

ନେତା : ନମସ୍କାର ।

(ନେତା ଫୋନ୍ ଉଠାଏ । ଗୁପ୍ତା ବଟୁଆ ନେବାକୁ ଉଦ୍ୟତ ହେଉଥିବା ସମୟରେ ହରବର ଫୋନ୍ ଧରେ ଏବଂ ବଟୁଆ ଦଉଦଉ ଅଟକିଯାଏ ପୁଣି ଗୁପ୍ତା ଦୌଡ଼େ ନେତା ପାଖକୁ । ତସ୍କର ଦୌଡ଼େ ଥାନାକୁ । ନେତା ଫୋନ୍ ଉଠାନ୍ତି । ଏମିତି ବାରମ୍ବାର ଗୁପ୍ତା ଓ ତସ୍କର ଥାନାରୁ ନେତା ପାଖକୁ ଦୌଡ଼ନ୍ତି । ନେତା ମୁହଁରୁ କେବଳ ଶୁଣାଯାଉଥାଏ,

ମୁଁ କିଛି ଶୁଣିବିନି ଓ ପୁଲିସ୍ ମୁହଁରୁ 'ଯା ଯା' ହରକତ ଆସି କେତେବେଳୁ ବଟୁଆରୁ ପାନ ନେଇ ଖାଉଥାଏ । ହରବର ବି ଖଣ୍ଡେ ଖାଉଥାଏ । ଏ ଦୁଇଜଣ ଏଠୁସେଠୁ ହୋଇ ହୋଇ ଥକିଯାଇ Centre zoneରେ ପରସ୍ପରକୁ ଭେଟନ୍ତି ।)

ଗୁପ୍ତା : ଆଉ ଭାଇ, ଚୋର ! ଏକ ବଟୁଆ କେ ଲିଏ କିତ୍‌ନେ ଘୁମେଙ୍ଗେ ?

ତସ୍କର : ନେତାଠୁ ପୁଲିସ୍, ଆଉ ପୁଲିସ୍‌ଠୁ ନେତା ପର୍ଯ୍ୟନ୍ତ ଘୂରିଘୂରି ଦିନ ସରୁନି । ବଟୁଆ ତା' ଜାଗାରେ ଅଛି । ଆମେ ଆମ ଜାଗାରେ ।

ଗୁପ୍ତା : ଆରେ ଭାଇ ! ଅଗର ହମ୍ ଦୋନୋ ଆପସ୍ ମେ ମିଲ୍ ଜାଏଙ୍ଗେ ତୋ

ତସ୍କର : କିନ୍ତୁ....

ଗୁପ୍ତା : ଆରେ ଭାଇ ! ତୁମ ପହଲେ ବତାଅ । ତୁମ କାହେକୋ ଚୋରୀ କରତେ ହୋ ?

ତସ୍କର : ଏ ପାପୀ ପେଟ୍‌କେ ଲିଏ ।

ଗୁପ୍ତା : ଅଗର ତୁମହାରା ପେଟ ଭରଯାଏ ତୋ ?

ତସ୍କର : ଚୋରୀ କରିବାନି ।

ଗୁପ୍ତା : ଠିକ୍ ହୈ ! ତୁମହାରା ପେଟକେ ଲିଏ, ମେ ହର ମୈନା କୁଛ ରୁପେୟା ପୈସା ଦୁଂଗା । ତନଖା ସମଝୋ । ତୁମ୍ ଇସ୍‌ପୈସା ମେ ଆପନା କାମ କରୋ । ଔର ଚୋରୀ କରକେ ମୁଝେ ପରେଶାନ ମତ୍ କରୋ ।

ତସ୍କର : ଏ ତ ଅତି ଆନନ୍ଦର କଥା । ଆମ ପେଟ ପୂରିଗଲେ, ପିଠି ଲୁଚିଗଲେ ଆମେ କାହିଁକି ଆଉ ଚୋରୀ କରିବୁ ।

ଗୁପ୍ତା : ଲେକିନ୍ ତୁମହାରା ଔର କୋଇ ସାଥୀ ?

ତସ୍କର : ସେମାନେ ପଇସା ପାଇଲେ ଚୋରୀ କରିବେନି ।

ଗୁପ୍ତା : ଠିକ୍ ହୈ । ଅଗର ଚୋରୀ ନେହିଁ ହୋଗା ତ ଦରୁଓ୍ୱାନ କା କୋଇ କାମ ନେହିଁ । ଓ ଯୋ ପୈସା ଲେତେ ହେଁ, ୟେ ସବ୍ ତୁମ୍ ଲୋଗେ । ତୁମ୍ ଏକ କାମ କରୋ । ଇସ୍ ଥାନା ମେ କିତନେ ଚୋର ହୋ, ସବ୍ ମିଲକର ଏକ ସମିତି ବନାଓ । ହମାରା ବ୍ୟବସାୟୀ ସଂଘ ତୁମାରା ତନଖା ଦେଗା । ମେ ଓ୍ୱାଦା କରତା ହୁଁ ।

ତସ୍କର : ମୁଁ ବି ଚୋରମାନଙ୍କ ତରଫରୁ ଆପଣଙ୍କୁ ଜବାବ୍ ଦଉଛି ।

ଗୁପ୍ତା : ସାବାସ୍ ଭାଇ ଚୋର । ଆଓ ମେରା ସାଥ ।

ତସ୍କର : ନେତା ତା’ ଘରେ ଥାଉ । ପୁଲିସ୍ ତା’ ଘରେ ଥାଉ ।

ଗୁପ୍ତା : ହମ୍ ଆପନା ଘରମେ ରହେଙ୍ଗେ ।

ତସ୍କର : ତେବେ ଚାଲନ୍ତୁ ଗୁପ୍ତାଜୀ ! ମୁଁ ଚୋରମାନଙ୍କୁ ଏକାଠି କରି ଆପଣଙ୍କୁ ସାକ୍ଷାତ କରିବି ।

ଗୁପ୍ତା : ଠିକ୍ ହୈ ଭାଇ ଚୋର ! ମେ ଘରପର ହୁଁ । ମତ୍ ଭୁଲ୍‌ନା (ଯାଏ)

ତସ୍କର : ଏତ ଗୋଟେ ବଢ଼ିଆ ପ୍ରସ୍ତାବ । ଆମେ ଚୋରମାନେ ଏକତ୍ରିତ ହେଲେ କ୍ଷତି କ’ଣ ? ସବୁ ଚୋର ଡକାୟତ ମିଶି ଯଦି ଗୋଟେ ୟୁନିୟନ୍ କରିଦେବା । ତା’ହେଲେ ମାସକୁ ମାସ ଦରମା ପାଇବା ଆରାମରେ ରହିବା । (କିଛିସମୟ ଭାବେ) ନା ନା ଆମେ ଆଉ ଚୋରୀ କରିବାନି । (ଚଟାପଟ ଆସେ)

ଚଟାପଟ : ଚୋରୀ କରିବାନି... ? କ’ଣ ମାଳା ଗଡ଼େଇବା ?

ଝପ୍‌ପଟ : (ପହଂଚି) ନା ପୁରୁକା ବିକିବା ।

ତସ୍କର : ସେ କାମରେ ବି ଇଜ୍ଜତ ଅଛି ।

ଝପ୍‌ପଟ : ଯାହା କଲେ ବି ଏ ଥାନାବାଲା ତୋ ଇଜ୍ଜତ ରଖିଲେ ତ ? ତୋ ନାଁଟା ତାଙ୍କ ଦାଗୀ ତାଲିକା ଖାତାରେ ଅଛି । ଯେକେହି ଚୋରୀ କଲେ ବି ପୁଲିସ ତୋତେଇ ଧରିବ ।

ତସ୍କର : ନା, କେହି ଚୋରୀ କରିବାନି ।

ଚଟାପଟ : କେହି ଚୋରୀ କରିବାନି ? ମାନେ ?

ତସ୍କର : ଆମ ଇଲାକାରେ ଯେତେ ଚୋର ଅଛୁ । କେହି ଆଉ ଚୋରୀ, ଡକାୟତି କରିବାନି ।

ଚଟାପଟ : ଆଉ ପକେଟ୍‌ମାର୍ ?

ତସ୍କର : ସିଏ ବି ବନ୍ଦ ।

ଝପ୍‌ପଟ : ଆଉ ମୋ ପୁଅ, ମାଇପ ? ତୋ ମା' ବାପ ? ତା' ଭାଇଭଉଣୀ ? ଏମାନେ କ'ଣ ପବନ ପିଇ ବଂଚିବେ ନା ଭୋକରେ ଛଟପଟ ହୋଇ ମରିବେ ?

ତସ୍କର : ବଂଚିବାକୁ ଚେଷ୍ଟା କରିବା, ହେଲେ ଚୋରୀ କରିବାନି ।

ଚଟାପଟ : ତେବେ କରିବା କ'ଣ ?

ତସ୍କର : ଆମେ ଯେତେ ଚୋର, ଡକାୟତ ଓ ପକେଟ୍‌ମାର ଅଛେ, ସମସ୍ତେ ମିଶି ଗୋଟେ ୟୁନିୟନ କରିବା ।

ଝପ୍‌ପଟ ଓ ଚପଟାପଟ :ୟୁନିୟନ ?

ତସ୍କର : ହଁ ଆମର ଏକତା ପାଇଁ ଗୋଟେ ୟୁନିୟନ ଦରକାର ।

ଝପ୍‌ପଟ : କି ବେ ଆମକୁ କ'ଣ ବୋନସ୍ ମିଳିବ ?

ତସ୍କର : କ'ଣ ମିଳିବ ନ ମିଳିବ ସେ କଥା ପରେ । ଆଗ ନିଜକୁ ରକ୍ଷାକରିବା ପାଇଁ ଆମକୁ ୟୁନିୟନଟେ କରିବାକୁ ପଡ଼ିବ ।

ଚଟାପଟ : ୟୁନିୟନ୍ ?

ଝପ୍‌ପଟ : ତୁ ଖବରକାଗଜ ପଢୁନୁ କି ? ବେ ମୂଲିଆମାନେ ପରା ୟୁନିୟନ୍ କରି ତାଙ୍କ ମଜୁରି ତିନିଶଟଙ୍କା କରିଦେଲେଣି ।

ଚଟାପଟ୍ : ମୂଲିଆମାନଙ୍କ ମଜୁରି ଯଦି ତିନିଶଟଙ୍କା ତାହେଲେ ଆମର ହଜାରେ ।

ଝପ୍‌ପଟ : ହଁ ମଜୁରି ତ ହଜାରେ । ତା' ସାଙ୍ଗକୁ ଘରଭଡ଼ା, ଔଷଧଖର୍ଚ୍ଚ, ବୋନସ୍ ଏମିତିସବୁ ମିଳିବନା ?

ଚଟାପଟ୍ : ଆଚ୍ଛା, ଆଚ୍ଛା ! ତା'ମାନେ ଅତିକମ୍‌ରେ ଦିନକୁ ପାଞ୍ଚଟା ପକେଟ୍ ବା ଗୋଟେ ବେଙ୍କ୍ ଡକାୟତି ଦିଆଯିବ ହିସାବ ଅନୁଯାୟୀ ।

ଝପ୍‌ପଟ : ଓ ହୋ ! ସେଟା ସରକାର ଯାହା କରିବନା, ତୋ କଥାରେ ?

ତସ୍କର : ସେସବୁ ପରେ, କେବଳ ଆମପ୍ରତି ଯେଉଁ ଅନ୍ୟାୟ, ଅତ୍ୟାଚାର ହଉଛି, ତା'ର ପ୍ରତିବାଦ ବି କରିବାର ସୁଯୋଗ ମିଳିଯିବ ।

ଝପ୍‌ପଟ : ଅନ୍ୟାୟ ମାନେ ? ଏ ଶଳା ପବ୍ଲିକ୍, ଚୋରୀ କରୁକରୁ ଯଦି by chance ଧରା ପଡ଼ିଯାଇଛ, ଦେ ଫଟାଫଟ୍ ମରାମତ୍ ।

ଚଟାପଟ୍ : ଆଉ ମାଡ଼ର ତ ଗୋଟେ ସୀମାଅଛି ।

ଝପ୍‌ପଟ୍ : ଆମେ ମାନୁଛୁ ଚୋରୀ କଲେ ମାଡ଼ ଖାଇବୁ । ତା' ବୋଲି ହିସାବ ବାହାରେ ?

ଚଟାପଟ୍ : ମାରିଲ ତ ମାରିଲ, ଫେର୍ ନିଶ କାଟି ଲଣ୍ଡାକରି ଗଧ ପିଠିରେ ବସେଇ ପ୍ରସେସନ୍‌ରେ ବୁଲେଇବା କ'ଣ ଉଚିତ ?

ଝପ୍‌ପଟ : ଏଟା କ'ଣ ଆଇନ୍ ?

ଚଟାପଟ : ଏବେ ୟୁନିୟନଟେ କରିଦେଲେ ଆଉ ପାରିବ ? ଆମ ଦିହରେ ହାତ ବଜେଇ ପାରିବ ? ହାତ ଭାଙ୍ଗି ଦେବାନି ?

ତସ୍କର : ନା, ଆମେ ଆଉ ମାଡ଼ ଖାଇବୁନି ।

ଝପ୍‌ପଟ : ନା ନା ଖାଇବୁନି କାହିଁକି ? ଖାଇବୁ । ଆଉ ତମ ହାତରୁ କାହିଁକି ? ଆମକୁ ମାରିବା ପାଇଁ ତ ପୁଲିସ୍ ଅଛନ୍ତି । ସେମାନେ ପିଟନ୍ତୁ । ଆମେ ସହିଯିବୁ ।

ତସ୍କର : ନା !

ଚଟାପଟ୍ : କାହିଁକି ସହିବୁନା ? ସେମାନେ କ'ଣ ମାରିବା ବେଳେ ହିସାବ କରନ୍ତି ?

ତସ୍କର : ୟୁନିୟନଟେ ହୋଇଗଲେ ସେମାନେ ଆମକୁ ଛୁଇଁବାର ସାହସ ବି କରିପାରିବେନି ।

ଝପ୍‌ପଟ : ୟୁନିୟନ ହୋଇଗଲା ପରେ ପ୍ରଥମେ ଗୁପ୍ତା ମାରୁଆଡ଼ି ଟ୍ରେଜେରୀ ଭାଙ୍ଗିବି ।

ଚଟାପଟ୍ : ମୋତି ମିଆଁର ପକେଟ୍ କାଟିବି ।

ଝପ୍‌ପଟ : ଆଚ୍ଛା ଆମକୁ ତ ଲାଇସେନ୍ସ ମିଳିବ ?

ଚଟାପଟ୍ : ହଁ ଲାଇସେନ୍ସ ଦେଖେଇ ଚୋରୀ କରିବା ।

ତସ୍କର : ନା ନା ଚୋରୀ ନୁହେଁ । ଆମ ୟୁନିୟନ ଚୋରୀ ବନ୍ଦପାଇଁ କାମ କରିବ । ୟୁନିୟନ କରିସାରିଲା ପରେ ଆମେ ଆଉ ଚୋରୀ ଡକାୟତି କରିବୁନି । ସାଧୁ ସଚ୍ଚୋଟ ଭଳି ଆମେ ସମାଜରେ ବଂଚିବୁ ।

ଝପ୍‌ପଟ : କ'ଣ ହେଲା ? ଚୋରୀ ଡକାୟତି କରିବୁନି ?

ଚଟାପଟ : ସାଧୁ ସଚ୍ଚୋଟ ଭଳି ବଂଚିବୁ ?

ତସ୍କର : ହଁ ।

ଝପ୍‌ପଟ : ଏ ସମାଜରେ ? ଏ ସମାଜରେ ତୁ ସାଧୁ ହୋଇ ବଂଚିବୁ ?

ଚଟାପଟ୍ : ଇଏ ତୋତେ ବଂଚେଇବ ?

ଝପ୍‌ପଟ : ବେ ଦାଗୀ ତାଲିକାରୁ ତୋ ନାଁଟା କ'ଣ ଏଡ଼େ ସହଜରେ ଲିଭିଯିବ ?

ଚଟାପଟ୍ : ପୁଲିସ୍‌ବାଲା କ'ଣ ଏଡ଼େ ସହଜରେ ତୋତେ ଛାଡ଼ିଦେବେ ?

ତସ୍କର : ହଁ ହଁ ମୁଁ ଆଜି କଥାବାର୍ତ୍ତା ପକ୍କା କରି ଆସିଛି । ଆଜିଠାରୁ ଆଉ ଚୋରୀ କରିବାନି । ଆଉ ବଂଚିବା କେମିତି ତା'ର ମଧ୍ୟ ବ୍ୟବସ୍ଥା କରି ଆସିଛି ।

ଚଟାପଟ୍ : ତା' ମାନେ ? ରୋଜଗାର ପନ୍ଥା ଠିକ୍‌କରି ଆସିଛୁ ?

ତସ୍କର : ହଁ ଆମେ ଯଦି ୟୁନିୟନ୍ କରି ସମସ୍ତେ ଏକଜୁଟ୍ ହୋଇ ଚୋରୀ ବନ୍ଦ କରିଦେବା, ତାହାଲେ ଆମକୁ ସବୁ ଚାକିରିଆ ପରି ଦରମା ମିଳିବ ।

ଝପ୍‌ପଟ : ଦରମା ମିଳିବ ?

ଚଟାପଟ୍ : ଦର...ମା....ଦବ କିଏ ?

ତସ୍କର : ମାରୁଆଡ଼ି ।

ଉଭୟେ : ମାରୁଆଡ଼ି ?

ତସ୍କର : ହଁ ବିଜନେଶ୍‌ମେନ୍‌ମାନେ ଠିକ୍ କରିଛନ୍ତି - ଆମେ ଚୋରୀ କରି ତାଙ୍କୁ ଅଯଥା ହଇରାଣ କରିବାନି । ସେମାନେ ଦରଓ୍ୱାନ, ଜଗୁଆଳୀ, ପୁଲିସ୍, ନେତାଙ୍କ ପଛରେ ଯାହା ଖର୍ଚ୍ଚ କରୁଛନ୍ତି । ସେ ଟଙ୍କା ଆମ ପଛରେ ମାସକୁ ମାସ ଦରମା ବାବଦରେ ଖର୍ଚ୍ଚ କରିଦେବେ ।

ଝପ୍‌ପଟ : ତାହେଲେ ଘରେ ବସିବସି ଚାକିରି ।

ଚଟାପଟ୍ : କଥାଟା ସତ ନା ଏମିତି ଆମକୁ ଭୁଆଁ ବୁଲଉଛୁ ?

ତସ୍କର : କିନ୍ତୁ ୟୁନିୟନ କରିବାକୁ, ସବୁ ଚୋରମାନଙ୍କୁ ଏକଜୁଟ୍ କରିବାକୁ ପଡ଼ିବ । ଯେମିତି ମୋଟେ ଚୋରୀ ନହୁଏ, ସେଥିପ୍ରତି ଆମକୁ ଜଗିବାକୁ ପଡ଼ିବ । ବାହାର ଚୋରମାନଙ୍କୁ ଜଗିବାକୁ ପଡ଼ିବ । ଚୋରି ନହେଲେ ଦରମା ନିଶ୍ଚିତ ମିଳିବ ।

ଝପ୍‌ପଟ : ଠିକ୍‌ଅଛି । ଆମେ ବି ଚୋରୀ ଡକାୟତି କରି ଝମେଲାରେ ପଡୁଛୁ । ଆମେ ବି ଶାନ୍ତିରେ ରହିବା ।

ଚଟାପଟ୍ : ହଁ ହଁ ଆମେ ୟୁନିୟନ୍ କରିଦବା ।

ତସ୍କର : ଝପ୍‌ପଟ ! ତୁ ଯା ଡକାୟତମାନଙ୍କୁ ଏକଜୁଟ୍ କର । ଚଟାପଟ୍ ତୁ ସବୁ ପକେଟ୍‌ମାର୍‌ମାନଙ୍କୁ ଏକଜୁଟ୍ କର । ଆଉ ମୁଁ ସବୁ ଚୋରମାନଙ୍କୁ ଏକଜୁଟ୍ କରି ତିନିଟା ସଂଘକୁ ମିଶେଇ ଏକ ମହାସଂଘ କରିବା । ଆମ ଭିତରେ ଏକତା ପ୍ରତିଷ୍ଠା ହୋଇଗଲେ...

ଝପ୍‌ପଟ୍ : ଇନ୍‌କ୍ଲାବ୍ ।

ଚଟାପଟ୍ : ଜିନ୍ଦାବାଦ୍ ।

ତସ୍କର : ଚୋର ଡକାୟତ ଏକହୁଅ ।

ଅନ୍ୟମାନେ: ଏକ ହୁଅ, ଏକ ହୁଅ ।

ତସ୍କର : ଚୋର ସଂଘରେ ଯୋଗଦିଅ ।

ଅନ୍ୟମାନେ: ଯୋଗ ଦିଅ, ଯୋଗ ଦିଅ ।

ତସ୍କର : ଚୋର ଏକତା ଜିନ୍ଦାବାଦ୍ ।

ଅନ୍ୟମାନେ: ଜିନ୍ଦାବାଦ୍, ଜିନ୍ଦାବାଦ୍ ।

(ପ୍ରସେସନ୍ ଷ୍ଟାଇଲ୍‌ରେ ବୁଲିବୁଲି ଯାଆନ୍ତି ଅନ୍ଧାର Left Zone ଥାନାକୁ Light ଆସିଲା ବେଳକୁ ଦେଖାଯାଏ ହରବର ଗୋଟେ ଚେୟାରରେ ବସି ଘୁଙ୍ଗୁଡ଼ି ମାରୁଥାଏ । ଅନ୍ୟଏକ ଚେୟାରରେ ବସି ହରକତ ଢୁଳଉଥାଏ । ହଠାତ୍ ହରକତର ନିଦ ଭାଂଗିଛି । ପଡୁପଡୁ ଉଠିପଡ଼ି ଏଣେତେଣେ ଚାହିଁଛି । ଦେଖିଛି ବଡ଼ବାବୁଙ୍କ ପାଟିରେ ମାଛିଟିଏ ପଶିଯାଉଥାଏ । ଛପିଛପି ଯାଏ । ହାତତାଳି ମାରି ମାଛି ମାରେ । ତାଳି ଶବ୍ଦରେ ବଡ଼ବାବୁ ଚମକି ଉଠନ୍ତି ।)

ହରବର : ଚୁର ! ଚୁର ! ଚୁର !

ହରକତ : ଏଁ ! ଚୋର, କାହିଁ ? କାହିଁ ?

ହରବର : (ଦୌଡ଼ି ଆସି ହରକତକୁ ଧରି ପକାନ୍ତି ।) ଯିବୁ କୁଆଡ଼େ ?

ହରକତ : ଏଁ ! ଏଁ ! ସାର ! ମୁଁ ଚୋର ନୁହେଁ ସାର । ମୁଁ ହରକତ ।

ହରବର : ହରକତ ?

ହରକତ : ହଁ ସାର !

ହରବର : ହରକତ ! ତୁମେ ଆଉ ହରକତ କରନି ହରକତ !

ହରକତ : ନିଦ ବାଉଳାରେ ସ୍ୱପ୍ନ ଦେଖିଲେ କି ସାର୍ ?

ହରବର : ହଁରେ ହରକତ ! ମୁଁ ସ୍ୱପ୍ନରେ ଗୋଟେ ବିରାଟ ଚୁରକୁ ଦେଖିଲି ।

ହରକତ : ଏଁ ! ଦିନରେ ସ୍ୱପ୍ନ ? ଆମ ନସିବରେ ଶେଷରେ ଏଇଆ ଥିଲା ? ଥାନାରେ ଦିନବେଳେ ଶୋଇଶୋଇ ସ୍ୱପ୍ନରେ ଚୋରକୁ ଦେଖିଲୁ ?

ହରବର : ଆରେ ହରକତ ! ଦିନରେ ହଉ କି ରାତିରେ ହଉ, ସତରେ ହଉ କି ସ୍ୱପ୍ନରେ ହଉ ଏତେଦିନ ପରେ ଗୋଟେ ଚୋରର ଦେଖା ତ ମିଳିଲା ?

ହରକତ : ଯା'ହଉ ଏତେଦିନ ପରେ ଚୋରକୁ ଦର୍ଶନ କରିପାରିଛନ୍ତି । ଏଇଟା ଆପଣଙ୍କ ସୌଭାଗ୍ୟ ବୋଲି ଧରି ନିଅନ୍ତୁ ।

ହରବର : ଆରେ ହରକତ ! ଏମିତି କେତେଦିନ ଥାନାରେ ବସିବସି ମାଛି ମାରିବା ?

ହରକତ : କ'ଣ ଆଉ କରିବା ସାର୍ ! ଚୋରୀ ହେଲେ ସିନା ପୁଲିସ୍‌କୁ ଖୋଜା ପଡ଼ିବ । ଚୋରୀ ତ ହେଉନି । ଦାସେ କାହିଁକି ତୁଚ୍ଛାଟାରେ ଫାଣ୍ଡିକି ଆସିବେ ?

ହରବର : ହଁ ସିଏ ବି ସତକଥା । (ନେତା ଆସନ୍ତି)

ନେତା : କ'ଣ କି ହେ ଥାନାବାବୁ !

ଉଭୟେ : ସାର୍ ନମସ୍କାର ।

ନେତା : ନମସ୍କାର ନମସ୍କାର ! କ'ଣ ଆଉ ଖବର ?

ହରବର : ନାଇଁ ସାର୍ ! ଆପଣଙ୍କ ଦୟାରୁ ଏମିତି ଦୁଃଖେ – ସୁଖେ କଟିଯାଉଛି ।

ନେତା : ହଇଓ ମାରାଣ୍ଡିବାବୁ ! କ'ଣ ଇମିତି ଶାସନକଲେ ଯେ ଏକାଥରେ ଥଣ୍ଡା ।

ହରବର : (ହସି) ସବୁ ଆପଣଙ୍କ ଆଶୀର୍ବାଦ ।

ହରକତ : ସାର୍ ! ଏବେ ବ୍ରିଟିଶ୍ ସରକାର ନାହିଁ । ବ୍ରିଟିଶ୍ ସରକାର ଥିଲେ, ସାର୍ ଆମର ଯିମିତିକା ଶାସନ ଜାଣନ୍ତି ନା, ଏତେବେଳକୁ S.P.କି କଲେକ୍ଟର ହେଇସାରନ୍ତେଣି ।

ନେତା : ଥାଉଥାଉ । ଆଉ ବାହାଦୁରୀ ଦେଖାଅନି । ଆରେ ଯଦି ଚୋରୀ ନହେବ ତମେମାନେ ଥାଇ କରିବ କ'ଣ ? ସରକାର ଯେତେବେଳେ

ଜାଣିବେ, ଏଠି ଚୋରୀ ହଉନି ଥାନା ଉଠେଇ ନେବେ । ତମକୁ ଛଟେଇ କରିଦେବେ ।

ହରବର : ଏଁ ! ଛଟେଇ !

ହରକତ : ମୋ ପିଲାଛୁଆଗୁଡ଼ା ଭାସିଯିବେ ସାର୍ ।

ନେତା : ଖାଲି ତମେ ନୁହଁ । ଆମେ ବି ଭାସିଯିବୁ । ତମେ ଜାଣ, ଚୋର, ଚୋରୀ ଆଉ ପୁଲିସ୍‌କୁ ନେଇ ଯେତେସବୁ ରାଜନୀତି ଚାଲେ । ନେତାମାନଙ୍କ ଗୁରୁତ୍ୱ ବଢ଼େ । ଆଉ ଏ ଚୋରୀ ବନ୍ଦ ହୋଇଯିବା ଫଳରେ ମୋ ଘରକୁ କେହିବି ଆସୁ ନାହାନ୍ତି ।

ହରବର : କିନ୍ତୁ ସାର୍ ।

ନେତା : ଯାଅ, ଯିମିତି ହେଲେ ଚୋରମାନଙ୍କୁ ବୁଝେଇ ସୁଝେଇ ହାତଗୋଡ଼ ଧରି ଦି' ଚାରିଟା ଚୋରୀ କରାଅ । ନହେଲେ ତମକୁ ଡିସ୍‌ମିସ୍ କରାଇ ନୂଆ ଅଫିସର୍ ଆଣିବି । ତା' ବୋଲି ତମଯୋଗୁଁ ମୁଁ ଦିନରେ ବସି ତରା ଗଣିବି ।

(ଏହି ସମୟରେ ବେଙ୍କ୍ ମେନେଜର ଆସନ୍ତି)

ମେନେଜର : ଆମ ଅବସ୍ଥା ବି ଅସମ୍ଭାଳ ହୋଇପଡ଼ିଲାଣି ।

ନେତା : ଆରେ ମେନେଜରବାବୁ ନମସ୍କାର । ଆସନ୍ତୁ ।

ମେନେଜର : ନମସ୍କାର ।

ନେତା : ଏ ସମୟରେ ବେଙ୍କ୍ ଛାଡ଼ି....

ମେନେଜର : ବେଙ୍କ୍‌ରେ ଆଉ ଅଛି କ'ଣ ? ବେଙ୍କ୍ ତ ବନ୍ଦ ହୋଇଯିବା ଉପରେ ।

ନେତା : କାହିଁକି ?

ମେନେଜର : ଆମ ବେଙ୍କ୍‌ରେ ଲୋକେ ଆଉ ଟଙ୍କା ଡିପୋଜିଟ୍ କରୁ ନାହାନ୍ତି ବରଂ ଯାହାର ଯାହା ଅଛି Withdraw କରି ନେଇଯାଉଛନ୍ତି । ସଞ୍ଚୟ କରିବା କଥା ଲୋକେ ଭୁଲି ଗଲେଣି ।

ନେତା : ଏଇଟା କେମିତି କଥା ?

ମେନେଜର : ଟଙ୍କା ଚୋରୀ ହୋଇଯିବା ଭୟରେ ଲୋକମାନେ ବେଙ୍କ୍‌ରେ ଟଙ୍କା ରଖନ୍ତି । ଚୋରୀ ଯେତେବେଳେ ଉଠିଗଲା, ଆଉ ବେଙ୍କ୍ ରହିବ କାହିଁକି ?

ନେତା : ନା ନା ମେନେଜରବାବୁ, ବେଙ୍କ୍ ଉଠାନ୍ତୁନି । ବେଙ୍କ୍ ଉଠିଗଲେ ମୋ ରାଜନୀତି ବି ଉଠିଯିବ । ମୋତେ ପାଞ୍ଚପଇସାରେ କେହି ପଚାରିବେନି ।

ମେନେଜର : ମୁଁ ଆଉ କ'ଣ କରିବି କହନ୍ତୁ ? ଯାହା କରିବାର କଥା, ଏଇ ମାରାଣ୍ଡିବାବୁ କରିବେ ।

ନେତା : ହଇଓ ମାରାଣ୍ଡିବାବୁ ! ଚୋରମାନଙ୍କୁ ଟିକିଏ ଜାଗ୍ରତ କରାଅ ।

ହରବର : ମୁଁ କ'ଣ ନାଇଁ କରୁଛି । (ଆସନ୍ତି ଓକିଲ)

ଅଜ୍ଞାନ : ଆରେ ଚୋରୀ ତ ଉଠିଗଲାଣି । ଥାନାରେ ଏତେ ଭିଡ଼ କାହିଁକି ?

ସମସ୍ତେ : ଆଜ୍ଞା ନମସ୍କାର ।

ନେତା : ଆରେ ଆଶ୍ଚର୍ଯ୍ୟେ ? ନମସ୍କାର ।

ଅଜ୍ଞାନ : ହଁ ହଁ ନମସ୍କାର ।

ହରବର : ସାର୍, ଆଜି କ'ଣ କଚିରି ଛୁଟି ?

ଅଜ୍ଞାନ : ଖାଲି ଆଜି ନୁହେଁ । ଏଣିକି ସବୁଦିନ କଚିରି ଛୁଟି ।

ନେତା : କାହିଁକି ?

ଅଜ୍ଞାନ : କେଶ୍ ଥିଲେ ସିନା କଚିରି ଚାଲିବ । ଏ ଥାନାବାବୁ କି ଚମତ୍କାରିଆ ଚିଜ୍ ଦେଖେଇଲେ କେଜାଣି, ଚୋରମାନେ ଚୋରୀ ଛାଡ଼ି ସାଧୁ ହୋଇଗଲେ । ହଇଓ ସମାଜରେ ଚୋରୀ ନହେଲେ ଏ ସମାଜ କ'ଣ ତିଷ୍ଠିବ ? ଶଳା ଅଜ୍ଞାନ ଆଚାର୍ଯ୍ୟ ଭଳିଆ ଆଡ଼ଭୋକେଟ୍ ହାତରେ କେଶ୍‌ନାହିଁ । ଏଁ । ହଇଓ ମାରାଣ୍ଡି ! କ'ଣ କି ହୋ ? ଆମ

ଦାନାପାଣିକୁ ନେଇ ଖେଳି ଦେଲ ? ଏ ବୟସରେ ଆମେ କରିବୁ କ'ଣ ?

ନେତା : କରିବା କ'ଣ ସେହି ଗୋଟେ କଥା ।

ମେନେଜର : କେହି କିଛି କରିପାରିବେନି । ଯାହା କରିବାର କଥା ଏଇ ମାରାଣ୍ଡିବାବୁ କରିବେ ।

ନେତା : ହଇଓ ମାରାଣ୍ଡି ରହିଁଛ କ'ଣ ହେ ? କିଛି ଗୋଟେ କର ।

ଅଜ୍ଞାନ : ଚୋରମାନଙ୍କୁ ଟିକିଏ ଜାଗ୍ରତ କରାଅ. ।

ହରବର : ହଇହେ ହରକତ୍ ରହିଁଛ କିସ ହେ ?

ହରକତ : ମୁଁ ଭାବୁଛି ଚୋରମାନଙ୍କୁ ଫୁସୁଲା ଫୁସୁଲି କରି ଭିତିରିଆ ସାହାଯ୍ୟ କଲେ ସେମାନେ ଅଣ୍ଟା ଭିଡ଼ି ଦିଅନ୍ତେ ।

ନେତା : ଆରେ ସେଇଟା ତ କର୍ତ୍ତବ୍ୟ । ଚୋରମାନଙ୍କୁ ସାହାଯ୍ୟ କରିବାକୁ ତମକୁ କିଏ ମନାକଲା ? ଦେଶର ଏ ଘଡ଼ିସନ୍ଧି ମୁହୂର୍ତ୍ତରେ ଚୋରମାନେ ଯଦି ନ ଜାଗିବେ ଦେଶ ରହିବ ତ ?

(ଏହି ସମୟରେ ତସ୍କର ଆସେ କାର୍ଡ଼ଟିଏ ଧରି)

ତସ୍କର : ଆଜ୍ଞା ନମସ୍କାର ।

ସମସ୍ତେ : (ଖୁବ୍ ଖୁସିରେ) ନମସ୍କାର! ନମସ୍କାର !

ନେତା : ଆରେ ତୁ ?

ତସ୍କର : ସାର୍ ଆପଣଙ୍କ କାର୍ଡ଼ଟା ଘରେ ଦେଇଆସିଛି । ନିଅନ୍ତୁ ଆପଣଙ୍କ କାର୍ଡ଼ଟା । ଆପଣଙ୍କ କାର୍ଡ଼ ତ ବେଙ୍କ୍‌ରେ ।

ସମସ୍ତେ : କାର୍ଡ଼ ?

ତସ୍କର : ହଁ ନିମନ୍ତ୍ରଣ କାର୍ଡ଼ ।

ନେତା : କ'ଣ ବାହାସାଦି ହଉଛୁ କି ?

ତସ୍କର : ନାଇଁ, ଆସନ୍ତା ଦି'ତାରିଖ ଦିନ ଆମ ଚୋରସମିତିର ଉଦ୍‌ଘାଟନ ଉତ୍ସବ । ଏହି ଉତ୍ସବରେ ଯୋଗ ଦେବାପାଇଁ.....

ନେତା : ଆଚ୍ଛା, ଆଚ୍ଛା ଭଲକାମଟେ କରିଛ ।

ତସ୍କର : ଯିବେ ସାର୍ । ଆପଣ ତ ଉଦ୍‌ଘାଟନ କରିବେ ।

ନେତା : ଆରେ ନିଶ୍ଚୟ ନା । ଚୋରମାନଙ୍କ ସମ୍ମିଳନୀ ପୁଣି ମୁଁ ଯିବିନି ? ନିଶ୍ଚୟ ଯିବି ।

(ତସ୍କର ଗ୍ଲଲିଯିବାକୁ ଆଗାଏ) କିରେ ! ତୁ ଗ୍ଲଲିଯାଉଛୁ କି ?

ତସ୍କର : ହଁ ମୋର ତେଣେ ଅନେକ କାମ ।

ହରବର : ଓ ହୋ କାମପାଇଁ ଦେଖିବା ।

ହରକତ : ଆମେ ଅଛୁ ଲାଗିଯିବା ।

ନେତା : ହଁ ହଁ ଚୋରମାନଙ୍କ ସମ୍ମିଳନୀ ଯେତେବେଳେ ପୁଲିସ୍‌ର ନିହାତି ସାହାଯ୍ୟ କରିବା ଆବଶ୍ୟକ ।

ମେନେଜର : ଚୋର ସହ ପୁଲିସ୍‌ର କାହିଁ କେଉଁକାଳରୁ ସଂପର୍କ ରହିଆସିଛି ।

ନେତା : କ୍ଷୀର ସଂଗେ ନୀର ଯେମନ୍ତ

ତସ୍କର : ନାଇଁ ଯେ....ମୁଁ....

ନେତା : ହଉ ଯିବୁ ତ ଟିକିଏ ବସି ଯା' ।

ଅନ୍ୟମାନେ : ହଁ ହଁ ବସ୍ ବସ୍ ।

ହରବର : ଏଇଠି ଏଇଠି (ନିଜ ଚେୟାର ଦେବାକୁ ପ୍ରସ୍ତୁତ)

ହରକତ : (ଚେୟାର ଝାଡ଼ିଦେଇ) ବସ ଆଜ୍ଞା ବସ ।

ତସ୍କର : ନା ନା

ହରବର : ଆରେ ବସ୍ ।

ନେତା : ଆରେ କଥା କ'ଣ କି ? ଏଇ ଟିକିଏ ଆଗରୁ ତମରିମାନଙ୍କ କଥା ପଡ଼ିଥିଲା ।

ମେନେଜର : ଏଇ ତ ସାଂଗେ ସାଂଗେ ।

ନେତା : କ'ଣ ମାରାଣ୍ଡିବାବୁ ! ଗ୍ଲୀ ଫା ମଗାଅ ।

ହରବର : ଆଣୁଛି ସାର୍ । ହରକତ ?

ହରକତ : ଆଜ୍ଞା

ହରବର : ଯାଅ କଫି ଆଣ ।

ହରକତ : କଫି କ'ଣ ଯାହା କହିବେ ଆଣିଦେବି । ହେଲେ ମୋ ପକେଟ୍‌ରେ ଫଟା ପଇସାଟେ ବି ନାହିଁ ।

ହରବର : ଓ ହୋ ଧାର ନେଇଆସ ।

ହରକତ : ସେ ଗୋକୁଳି ସାହୁ ମୋତେ ଆଉ ଧାର ଦବନି ।

ହରବର : ଓ ହୋ ମୋ ନାଁରେ ନେଇଆସ୍ ।

ହରକତ : ଆଜ୍ଞା ।

ହରବର : ଭଲ ଗରମାଗରମ କଫି ଆଣିବ ।

ମେନେଜର : (ଟଙ୍କା ଦେଇ) ମୋ ତରଫରୁ ଗୋଟେ ଥଣ୍ଡା ଆଣିବ ।

ଅଜ୍ଞାନ : ଏଇ ନିଅ ମୋ ତରଫରୁ ଗୋଟେ Wills filter ସିଗାରେଟ୍ ନେଇଆସ ।

ହରକତ : ଆଜ୍ଞା ।

ନେତା : ତମେସବୁ ଭାବୁଥିବ, ମୁଁ ଏଯାବତ୍ ଖାଲି ଖାଇ ଆସିଛି । କେବେ କାହାରିକୁ ଖୁଆଇ ନାହିଁ । ଯାଅ ମୋ ତରଫରୁ କିଛି ନହେଲା ନାହିଁ, ଲବଙ୍ଗ ଦିଆ ବାସ୍‌ନା ପାନରୁ ଖଣ୍ଡେ ନେଇଆସିବୁ । (ପଇସା ପାଇଁ ହରକତ ହାତ ବଢ଼ାଏ) ଯା ମୋ ନାଁ କହିଦେଲେ ମାରାଣ୍ଡିବାବୁଙ୍କ ଖାତାରେ ଲେଖି ଦୋକାନୀ ଦେଇଦେବ । (ହରକତ ଯାଏ)

ହରବର : କିରେ ତସ୍କର ! ତୋର ଜମାରୁ ଦେଖାନାହିଁ କଥା କିସ ?

ତସ୍କର : ଚୋରୀ ଧନ୍ଦା ତ ଛାଡ଼ିଦେଲି । ଆଉ ଭେଟହେବ ବା କାହିଁକି ?

ନେତା : କ'ଣ ହେଲା ? କ'ଣ ହେଲା ? ଚୋରୀ ଛାଡ଼ିଦେଲୁ ? କିରେ ଭାରି ସହଜରେ ତ କହିପକେଇଲୁ ? ଆରେ କୁଳବେଉଷା କେହି କ'ଣ ଛାଡ଼େ ?

ତସ୍କର : ନାଇଁ ଆଜ୍ଞା । ଆମ ବେଉଷାରେ ଭାରି ଝାମେଲା । ରାତିଯାକ ଯୋଉ ଖଟଣି । ତାପରେ ସକାଳ ହେଲାକୁ ପୁଲିସ୍‌ର ଯୋଉ ଜୁଲମ । କେତେ ସହିବ ?

ହରବର : ନାଇଁନାଇଁ ତୁ ଭୁଲ୍ ବୁଝୁଛ । ପୁଲିସ୍ ସିନା ଚୋରକୁ ନାଲିଆଖି ଦେଖାଏ । ନହେଲେ କିସ ଚୋର ପ୍ରତି ପୁଲିସ୍‌ର ହୃଦୟରେ ମମତା ନାହିଁ ?

ମେନେଜର : ମମତା ନଥିଲେ ଏବେ ମମତା ଆଣିବାକୁ ପଡ଼ିବ ।

ନେତା : ଆଉ ?

ଅଜ୍ଞାନ : କି ହୋ ! ପୁଲିସ୍ ହୋଇଛ ଚୋର ପ୍ରତି ହୃଦୟରେ ମମତା ରଖିନ ?

ନେତା : କେମିତି ରଖିବେ ଚୋରଟାକୁ ଦେଖିଲାମାତ୍ରେ ଗୋରୁଗାଈଙ୍କ ପରି ବାଡ଼େଇବେ ।

ହରବର : ଆପଣ ବିଶ୍ୱାସ କରନ୍ତୁ । ମୋ ହୃଦୟରେ ଚୋରମାନଙ୍କ ପ୍ରତି ଭରପୂର ମମତା ରହିଛି । ଖାଲି ଆମ ହରକତଟା ଯାହା ବେଳେବେଳେ...

ଅଜ୍ଞାନ : ନା ନା ତାକୁ ସତର୍କ କରାଇ ଦିଅ । ନହେଲେ ଅବସ୍ଥା ଖରାପ କରିଦେବି ।

ତସ୍କର : ସେ କଥା ଯାହା ବି ହଉ । ଏ ସମାଜରେ ଚୋରମାନଙ୍କର ମାନ, ମର୍ଯ୍ୟାଦା ବୋଲି କିଛି ନାହିଁ ।

ନେତା : ନା ନା ତୁ ମାନ ମର୍ଯ୍ୟାଦା ବିଷୟରେ ଆଦୌ ଚିନ୍ତା କରନା । ମୁଁ ସେ ବିଷୟରେ ଏକ ରୀତିମତ ଯୋଜନା ପ୍ରସ୍ତୁତ କରିସାରିଛି । ଏ

ସମାଜରେ ଚୋରମାନଙ୍କୁ କିପରି ଉଚିତ ସମ୍ମାନ ଦିଆଯାଇପାରିବ । ଚୋରମାନଙ୍କ ମର୍ଯ୍ୟାଦା ରକ୍ଷାକରିବା ଦିଗରେ ଜନସାଧାରଣ କିପରି ଅଧିକ ଧ୍ୟାନ ଦେବାକୁ ବାଧ ହେବେ, ସେ ବିଷୟରେ ମୁଁ ଆଗାମୀ ଅଧିବେଶରେ ଏକ ସଂଶୋଧନୀ ଚିଠା ପ୍ରସ୍ତାବ ପାସ୍ କରାଇବି । ଚୋରମାନଙ୍କ ଉନ୍ନୟନ ପାଇଁ ଏକ ରୀତିମତ ଚୋରମଙ୍ଗଳ ପାଣ୍ଠି ଗଠନ କରାଯିବ ।

ତସ୍କର : ହଁ ଆପଣ ଯଦି ଏଇସବୁ ସୁବିଧା କରିଦିଅନ୍ତେ, ତାହେଲେ ଚୋରମାନେ କେବେହେଲେ ବି ଚୋରୀ କରିବାର ସ୍ୱପ୍ନ ବି ଦେଖନ୍ତେନି ।

ମେନେଜର : ଉଁ ହୁ, ଏଇଠି ତ ବୁଝାମଣା ଭୁଲ୍ ହୋଇଯାଉଛି ।

ହରବର : ଚୋରୀ ନକଲେ ଚୋରର ମହତ୍ତ୍ୱ ରହିବ କେମିତି ?

ନେତା : ତା' ନୁହେଁ ତ ଆଉ କ'ଣ ? ଚୋରୀ କରିବାଟା ନିହାତି ଦରକାର ନା ।

ତସ୍କର : ନା ନା ଆମେ ପ୍ରତିଜ୍ଞା କରିସାରିଛୁ, ଜୀବନରେ ଆଉ ଚୋରୀ କରିବୁନି ।

ନେତା : ଓ ହୋ ତୋତେ ସବୁଦିନ ଚୋରୀ କରିବାକୁ କିଏ କହୁଛି । ଅତିକମ୍‌ରେ ସପ୍ତାହରେ ଛଅସାତଦିନ ଚୋରୀକର ।

ହରବର : ଅସୁବିଧା କିଛି ହେବନି । ଆମେ ସବୁପ୍ରକାର ସାହାଯ୍ୟ କରିବୁ ।

ମେନେଜର : ତମେ ଚୋରୀ କର । ଯଦି ଦରକାର ପଡ଼େ, ଛୁରୀ, ବଂଧୁକ ଆଦି ଯନ୍ତ୍ରପାତି କିଣିବା ପାଇଁ ମୁଁ କିଛି Loanର ବ୍ୟବସ୍ଥା କରିଦେବି ।

ହରବର : ବନ୍ଧୁକ ଇତ୍ୟାଦି ମୋ ପାଖରେ ଅଛି । ମୁଁ ଦେଇଦେବି ।

ନେତା : ଯଦି ରହିଁବ ମୋ ଗାଡ଼ିଟା ବି ବ୍ୟବହାର କରିପାର ।

ଅଜ୍ଞାନ : କୋର୍ଟ, କଚିରି ଦାୟିତ୍ୱ ମୋର ।

ହରବର : ତମେ ଯେମିତି ହେଲେ ଚୋରୀ କର ।

ତସ୍କର : ନା ଚୋରୀ କରିବାକୁ ଜମା ଇଚ୍ଛା ହଉନି ।

ମେନେଜର : ଓ ହୋ ଚେଷ୍ଟାକର ।

ତସ୍କର : ଚୋରୀ କରିବା କ'ଣ ଛୋଟିଆ କାମ ?

ନେତା : କିଏ କହିଲା ? ଚୋରୀକାମ ଭଳି ଦାୟିତ୍ୱ କାମ ଆଉ ପୃଥିବୀରେ କ'ଣ ଅଛି ?

ମେନେଜର : ଚୋରୀ ଗୋଟେ କଳା । ଆଉ ସେ କଳା କ'ଣ ସମସ୍ତଙ୍କଠାରେ ଥାଏ ?

ନେତା : ଭଗବାନ ସେ କଳାଟିକକ ତୋରି ହାତରେ ଦେଇଛନ୍ତି ।

ତସ୍କର : କିନ୍ତୁ ଆମ ସଂଘରେ ନିଷ୍ପତ୍ତି ନିଆ ସରିଛି ।

ନେତା : ଓ ହୋ ତମ ସଂଘରେ ତୁ ତ ନେତା । ତୁ ଯାହା କହିବୁ ଅନ୍ୟମାନେ ଖାଲି ହାତ ଟେକିବେ ।

(ହରକତ୍ ଆସେ)

ହରକତ : ଆଜ୍ଞା, ଆସିଗଲା ଆସିଗଲା ଆଜ୍ଞା । ଥଣ୍ଡା, ଓକିଲ ଅଜ୍ଞାନଙ୍କ ସିଗାରେଟ୍, ପୁଲିସ୍‌ବାଲାଙ୍କ ଗରମ, ଆଉ ସାରଙ୍କର ନରମ ।

ହରବର : ନିଅ କଫିଟା ଥଣ୍ଡା ହୋଇଯିବ ।

ମେନେଜର : ନିଅ ଏ ଥଣ୍ଡାଟା ପିଇଦେଇ ମନ ଥଣ୍ଡା କରିଦିଅ ।

ଅଜ୍ଞାନ : ସିଗାରେଟ୍‌ଟା ଓଠରେ ଲଗେଇ ମାରିଦେ ଦମ୍‌ଟା ।

ନେତା : ତାପରେ ଲବଙ୍ଗ ପାନଟାକୁ ଚୋବେଇ ମୁରୁକି ହସ ମାରି ହଁ କହିଦେ ।

(ସବୁତକ ଜବରଦସ୍ତ ତାକୁ ଖୁଆଇଲେ)

ତସ୍କର : କିନ୍ତୁ (ଉଠୁଥାଏ, ଏହି ସମୟରେ Mick ପ୍ରଚର ଶୁଣାଯାଏ)

ମାଇକ୍ :ବଂଧୁଗଣ ! ଆସନ୍ତା ଦୁଇତାରିଖ ସନ୍ଧ୍ୟା ସାତଘଟିକା ସମୟରେ ସ୍ଥାନୀୟ ଟାଉନ୍‌ହଲ୍‌ଠାରେ ନିଖିଳ ଉତ୍କଳ ଚୋରସମିତିର ଏକ ଖୋଲା ଅଧିବେଶନ ଅନୁଷ୍ଠିତ ହେବାକୁ ଯାଉଛି । ଏଥିରେ ଓଡ଼ିଶାର ବିଶିଷ୍ଟ ଚୋର, ଡକାୟତ ଓ ପକେଟ୍‌ମାରମାନେ ଯୋଗଦେବାର କାର୍ଯ୍ୟକ୍ରମ ରହିଛି । ଏଣୁ ସମସ୍ତ ଚୋର ଭାଇଭଉଣୀମାନଙ୍କୁ ନିବେଦନ ସେମାନେ ବହୁ ସଂଖ୍ୟାରେ ଯୋଗଦେଇ ଆମର ଏହି ସଭାକୁ ସାଫଲ୍ୟ ମଣ୍ଡିତ କରିବେ ।

(ସମସ୍ତେ ଖୁଆଇ ଦେବା ଭଙ୍ଗୀରେ freezeରେ ଥାଆନ୍ତି)

- ଅନ୍ଧାର -

# ପରିଣତି ପର୍ବ

(ସମଗ୍ର ମଂଚଟି ଏକ ସଭାମଣ୍ଡପ । ମଂଚରେ ତସ୍କର, ଗୁପ୍ତା, ନେତା ଆଦି ଆସୀନ । Light ଆସିବା ବେଳକୁ ଦେଖାଯାଏ - ନେତା ଭାଷଣ ଦେଉଥାନ୍ତି । )

ନେତା : ବନ୍ଧୁଗଣ ! ମୁଁ ଶେଷରେ କେବଳ ଏତିକି କହିବାକୁ ଚାହେଁ ଯେ, ଏ ଚୋରମାନେ ହେଉଛନ୍ତି ଆମ ଦେଶର ତଥା ଜାତିର ମେରୁଦଣ୍ଡ । ତେଣୁ ଚୋରମାନଙ୍କର ସର୍ବାଙ୍ଗୀନ ବିକାଶପାଇଁ ଏକ ଚୋର କଲ୍ୟାଣ ପାଣ୍ଠି ଗଠନ ହେବା ଆବଶ୍ୟକ । ଦୁଃସ୍ଥ ଚୋରମାନଙ୍କୁ ପେନ୍‌ସନ୍ ମିଳିବା ଆବଶ୍ୟକ । ଆଉ ବିଶେଷକରି ଏ ପୁଲିସ୍‌ର ଅତ୍ୟାଚାର କବଳରୁ ଚୋରମାନଙ୍କୁ ରକ୍ଷା କରିବା ପାଇଁ ଦେଶବ୍ୟାପି ଏକ ଚୋର ସଂଗ୍ରାମ ସମିତି ଗଠନ କରିବା ଆବଶ୍ୟକ । ଶୁଣିଲେ ଦୁଃଖ ଲାଗିବ ବଂଧୁଗଣ । ଆମ ଦେଶରେ ଚୋରୀବିଦ୍ୟାର ବିକାଶ ପାଇଁ ଏ ପର୍ଯ୍ୟନ୍ତ ବିଦ୍ୟାଳୟଟିଏ ନାହିଁ । ମାତ୍ର ଗୌରବର ବିଷୟ ଏହି ଯେ, ଆମ ଦେଶର ଚୋରମାନେ ପୁରୁଣା ଅବଧାନୀ ବିଦ୍ୟାରେ ଚୋରୀକରି ମଧ ଆନ୍ତର୍ଜାତୀୟ କ୍ଷେତ୍ରରେ ନିଜ ଦେଶର ଟେକ ରଖିପାରିଛନ୍ତି । ହେ ଚୋର ଚୋରଣୀ ବଂଧୁଗଣ । ଆପଣମାନେ ତ ଜାଣନ୍ତି ମୁଁ ଗାନ୍ଧି, ଗୋପବନ୍ଧୁ ଭଳି ନିଃସ୍ୱ । ମୁଁ ସେମିତି କିଛି ଦାନ ଆପଣମାନଙ୍କୁ ଦେଇପାରୁନି । ଗୋଟିଏ କଥା, ଆମ ଦେଶରେ ଏ ଯାବତ୍ ଚୋରଦିବସ ପାଳନ କରାଯାଉନାହିଁ । ତେଣୁ ମୁଁ ମୋର ଜନ୍ମଦିବସଟିକୁ ଚୋରମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ

କଲି । ଆଜିଠାରୁ ପ୍ରତ୍ୟେକବର୍ଷ ମୋର ଜନ୍ମତିଥି ଚୋରଦିବସ ରୂପେ ପାଳିତ ହେବ । (ତାଳି) ଧନ୍ୟବାଦ । (ବସନ୍ତି ତସ୍କର ଉଠେ)

ତସ୍କର : ମାନନୀୟ ଶ୍ରୀଯୁକ୍ତ ଚୋରସମିତିର ସଭାପତି, ମୁଖ୍ୟ ଅତିଥି ବ୍ୟବସାୟୀ ସଂଘ ସଭାପତି ଶ୍ରୀଯୁକ୍ତ ମକୁଭାଇ ଛକାରାମ ଗୁପ୍ତା, ମୁଖ୍ୟବକ୍ତା ଶ୍ରୀଯୁକ୍ତ ନିର୍ଲ୍ଲଜ ଶିରୋମଣି ଦୁଃଖମୋଚନ ପଟ୍ଟନାୟକ ଏବଂ ମୋର କମ୍ରେଡ୍ ଚୋର, ଡକାୟତ, ପକେଟ୍‌ମାର ଭାଇ ଓ ଭଉଣୀ । ଆପଣମାନେ ଆମ ସମିତିର ଆଭିମୁଖ୍ୟ ବିଷୟରେ ବିଭିନ୍ନ ବକ୍ତାଙ୍କଠାରୁ ଅନେକ କଥା ଶୁଣିଲେ । ଆଉ ବିଶେଷକିଛି କହିବାର ନାହିଁ । ଚୋର ସଂଘ ସଂପାଦକ ହିସାବରେ ମୁଁ କେବଳ ଏତିକି କହିବାକୁ ଚାହେଁ ଯେ, ଆଜି ଆମ୍ଭର ବ୍ୟବସାୟୀ ସଂଘ ଓ ମହାଜନ ସଂଘ ସହିତ ଯେଉଁ ଚୁକ୍ତିପତ୍ର ସ୍ୱାକ୍ଷରିତ ହୋଇଯାଇଛି, ସେହି ବିଷୟରେ ମୁଁ ଆପଣମାନଙ୍କୁ ସମ୍ୟକ୍ ସୂଚନା ଦେଉଛି । ଆମ ତରଫରୁ ଆମେ ଆଉ ଚୋରୀକରି ସେମାନଙ୍କୁ ଅଯଥାରେ ହନ୍ତସନ୍ତ କରିବୁ ନାହିଁ ବୋଲି ପୂର୍ଣ୍ଣପ୍ରତିଶ୍ରୁତି ଦେଲାପରେ ସେମାନେ ତାଙ୍କ ସଂପତ୍ତିରେ ଆମର ଅଧିକାରକୁ ସମ୍ମାନ ଦେଇ ଏ ବାବଦରେ ଆମକୁ ମାସିକ ବେତନ ହିସାବରେ ଆମର ଶକ୍ତି ଓ ଯୋଗ୍ୟତାକୁ ବିଚାରକୁ ନେଇ ସାହାଯ୍ୟ ଯୋଗାଇ ଦେବାର ଜବାବ୍ ଦେଇଅଛନ୍ତି । ଏହି ପରିପ୍ରେକ୍ଷୀରେ ମୁଁ ବ୍ୟବସାୟୀ ସଂଘର ସଭାପତି ଶ୍ରୀଯୁକ୍ତ ଗୁପ୍ତାଙ୍କୁ ଅନୁରୋଧ କରିବି ସେ ତାଙ୍କ ନିଜଭାଷାରେ ଏ ବିଷୟ ଘୋଷଣା କରିବେ ।

ଗୁପ୍ତା : ଆରେ ଭାଇ ହମେ ଭାଷଣ ଫାଷଣ ପସନ୍ଦ ନେହିଁ ହୈ । ହମ୍ କାମ୍‌ପର ଭରୋସା କରତେ ହୈ । ବାତ୍ ୟେ କି ହମ୍ ବିଜିନେଶ୍‌ମେନ୍ ହୈ ଔର ଆପ୍ ଚୋର ହୈ । ହମାରା ପୈସା ଚୁରାକର ଆପ୍ ଲୋଗ୍ ଜିତେ ହୈ । ଲେକିନ୍ ମେରା ଖେୟାଲ୍ ୟେ ହୈ କି ଅଗର ହମାରା ପୈସା ପର ତୁମକୋ ଜିନା ହେ ତୋ ଫିର୍ ଚୋରୀ କରକେ କ୍ୟୁଁ ? ଐସେ କ୍ୟା ଜିନା ନେହିଁ ହୋଗା ? ଇସ୍‌ଲିଏ ମେ କହତା ହୁଁ ତୁମ୍ ଲୋଗ୍

ଜିତ୍‌ନେଭି ଚୋର ହୈ ସବ୍ ହମାରା ୟେ ଚୋରସମିତି ମେ ଆପନା ନାମ ରଜିଷ୍ଟରୀ କର ଦୋ । ହମ୍ ହର ମୈନା ମେ ଇସ୍ ନାମପର ଦୋହଜାର, ଋରହଜାର, ପାଞ୍ଚହଜାର କରକେ ଭେଜ୍ ଦୁଁଗା । ତୁମ୍‌ଭି ଖୁସ୍ ଔର ହମ୍ ଭି ଖୁସ୍ । ୟେ ବିଚ୍ ବାଲେକୋ ଛୋଡ଼୍ ଆଓ ଲିଖୋ ଆପନା ନାମ୍ । (ପାନ ଖାଇ ବସନ୍ତି । ଜଣେ ଦୁଇଜଣ ଚୋର ଆସି ନିଜ ନାଁ ଲେଖନ୍ତି ।)

ନେତା : ଯେଉଁମାନଙ୍କ ନାଁ ନାହିଁ କେବଳ ସେହିମାନେ ଆସି ନାଁ ଲେଖନ୍ତୁ । ଏହି ଖାତାରେ ନାଁ ନଥିଲେ ଦରମା ମିଳିବନି । ସେତେବେଳେ ଆଉ କେହି ଶୁଣିବେନି । ତେଣୁ ଯେଉଁମାନେ ପ୍ରକୃତରେ ଚୋର ସେହିମାନେ ଆସି ନିଜ ନାଁ ଲେଖନ୍ତୁ ।

(ଜଣେ ସାଧୁ ଆସନ୍ତି)

ସାଧୁ : ବୋମ୍ ଶଙ୍କର ! ବୋମ୍ ଭୋଲେ ।

ତସ୍କର : ଆରେ ନା ନା ! ଏଟା ଚୋର ସମିତି । ଏଠିକି ସାଧୁ ଆସିବା ନିଷେଧ ।

ସାଧୁ : ବତ୍ସ ! ମୋତେ ତମ ସମିତିରେ ମିଶେଇ ଦିଅ ।

ନେତା : ମାନେ ? ଚୋରସମିତିରେ ସାଧୁ ମିଶିବ ?

ତସ୍କର : ହୋଇପାରିବନି । ଏଠି କେବଳ ଚୋର ମିଶିବେ ।

ନେତା : ହଇଓ ! ତୁମେ ସାଧୁ ହୋଇ ଏ ସମିତିରେ ମିଶିବାକୁ କାହିଁକି ଆସିଛ ?

ସାଧୁ : କ'ଣ କରିବି ଆଜ୍ଞା ! ଆଜିକାଲି ଯୁଗରେ ସାଧୁକୁ ଆଉ କିଏ ପଚାରୁଛି ? ଭିକମୁଠେ ବି ଦଉ ନାହାନ୍ତି । ବାଟରେ, ଘାଟରେ ବେଜ୍ଜିତ୍ କରୁଛନ୍ତି । ତପସ୍ୟା କରନ୍ତେ ବଣବୁଦା ସବୁ ତ ସଫା ହୋଇଗଲାଣି । କେଉଁଠି ବସି ତପସ୍ୟା କରିବା । ଯଦିଓ କୋଉଁଠି ଟିକିଏ ସରକାରୀ ବଣରେ ଚକାପାରି ବସିଲେ ତ ଜଙ୍ଗଲବିଭାଗବାଲା କାଠଚୋର, ହାତୀଦାନ୍ତ

ଚୋର କହି ବାନ୍ଧିଲେ । ତେଣୁ ବଂଚିବୁ କେମିତି ବାବା । ଏଠି ଦେଖୁଛୁ ଚୋରମାନଙ୍କ ପାଇଁ ଉତ୍ତମ ବ୍ୟବସ୍ଥା କରାଯାଇଛି । ତେଣୁ ଆମ୍ଭ ନାମ ଏହି ତାଲିକାରେ ଭରିଦିଅ ।

ତସ୍କର : ନା, ଏହା ଚୋରମାନଙ୍କ ସମିତି । ଏଠି କେବଳ ଚୋର ରହିବେ ।

ସାଧୁ : ହଉ ମୋ ନାଁଟା ଲେଖ ।

ତସ୍କର : ନା ସାଧୁ ନା ଏଠି ରହିବନି ।

ସାଧୁ : ସାଧୁ ? ମୁଁ କ'ଣ ସାଧୁ ? ମୁଁ ବି ଚୋର ।

ତସ୍କର : ତ...ମେ....ଚୋର ? ପ୍ରମାଣ ?

ସାଧୁ : ପ୍ରମାଣ ? (ନକଲି ନିଶ, ଦାଢ଼ି, ଖୋଲେ) ମୁଁ ଚୋରୀ କରିବା ପାଇଁ ସାଧୁବେଶ ଧରିଥିଲି । ଆଉ ମୁଁ କେବଳ ମନ୍ଦିରମାନଙ୍କରୁ ଚୋରୀକରେ । ଭଗବାନଙ୍କ ଆଖିରେ ଧୂଳିଦେଇ ତାଙ୍କରି ମୂର୍ତ୍ତିକୁ ଚୋରୀ କରେ । ଏଇ ଦେଖୁନା ମୋ ବେଗ୍‌ରେ ଏବେବି ଚୋରୀମାଲ୍ ମାନେ ଅଛନ୍ତି ଭଗବାନ । (ଦେଖେଇଲେ)

ଗୁପ୍ତା : ଆରେ ଭାଇ ! ୟେ ତୋ ବଡ଼ାଚୋର । ଲିଖୋ ଭାଇ ଆପନା ନାମ । (ସାଧୁ ଲେଖେ) ତରୁଣ ଉଠିଆସେ ।)

ତରୁଣ : ମୁଁ ବି ଚୋର ।

ସମସ୍ତେ : ମାନେ ?

ତରୁଣ : ଏତେ ପାଠ ପଢ଼ି ଯେତେବେଳେ ଚାକିରି ଖଣ୍ଡେ ମିଳିଲାନି ଏବଂ ଚୋରୀକଲେ ଯଦି ସହଜରେ ଦରମା ମିଳିବ । ଘରେ ବସିବସି ଚାକିରି ହୋଇଯିବ ତା'ହେଲେ ଚୋର ହେଲେ କ୍ଷତି କ'ଣ ? ମୋତେ ଚୋର ସଂଘରେ ମିଶେଇ ନିଅନ୍ତୁ ।

ତସ୍କର : କେମିତି ମିଶିବ ? ତମେ ଚୋର ନହେଲେ ଏଠି ମିଶି ପାରିବନି ।

ତରୁଣ : କହୁଛି ପରା ମୁଁ ଚୋର ।

ଗୁପ୍ତା : ନେହିଁ ସ୍ରିପ୍ ବୋଲ ଦେନେସେ ନେହିଁ ହୋଗା ସବୁତ୍ ଦିଖାଅ ।

ତରୁଣ : ସବୁତ୍ ?

ନେତା : ହଁ ହଁ ତମେ ଚୋର ବୋଲି ପ୍ରମାଣ ଦେଖାଅ ।

ତରୁଣ : ମୁଁ...ମୁଁ ତ ସେମିତି ଟଙ୍କା ପଇସା ଧନରତ୍ନ ଚୋରୀ କରିନି । ତଥାପି...ମୋତେ ମିଶେଇ ଦିଅନ୍ତୁ । ମୁଁ ଗୁକିରିଟିଏ ପାଇଁ ବହୁତ କଷ୍ଟ ପାଇଲିଣି ।

ତସ୍କର : ଓ ବାବୁ ଏଟା Employment Exchange ନୁହେଁ । ଏଠି ଗୁକିରି ମିଳିବ । କେବଳ ଚୋରମାନଙ୍କୁ ଥଇଥାନ କରାଯିବ । ତମେ ଚୋର ନୁହଁ । ତେଣୁ ଯାଅ । ତମେ ଚୋରସମିତିରେ ରହିପାରିବନି ।

ତରୁଣ : ମୁଁ ଗୁକିରି ତ ପାଇଲିନି । ଶେଷରେ ଚୋରଟେ ବି ହେଇପାରିବିନି ?

ତସ୍କର : ଚୋର ହେବାଟା କ'ଣ ସହଜ କଥା ।

ଗୁପ୍ତା : ଆରେ ଭାଇ ଯାଅ ଯାଅ ଚୋରୀ କରନା ଇତନା ଆସାନ୍ କାମ୍ ନେହିଁ ।

ତରୁଣ : (ମୁହଁ ତଳକୁ କରିଯାଏ ।) ସମସ୍ତେ ଠେଲିଠେଲି ବାହାରକୁ ପଠେଇ ଦିଅନ୍ତି)

(ହରକତ ଦୌଡ଼ିଆସେ)

ହରକତ : ଆଜ୍ଞା ମୋ ନାଁଟା ଲେଖେଇ ଦିଅନ୍ତୁ ।

ଗୁପ୍ତା : ଆରେ ଭାଇ ତୁମ୍ ?

ନେତା : ଆରେ ହରକତ ! ତୁମେ ତୁମ ଚାକିରି ?

ହରକତ୍ : ଆଜ୍ଞା, ଚୋରମାନେ ଯେତେବେଳେ ଚୋରୀ ଛାଡ଼ିଦେଲେ, ଆମେ ଆଉ କାହାକୁ ନେଇ ଚାକିରି କରିବା ? ଆମ ଚାକିରି ଆଉ ରହିବ କେମିତି ? ମୋ ପୁଅ, ମାଇପ ଭାସିଯିବେ । ଅନ୍ତତଃ ଚୋର ସଂଘରେ ରହିଗଲେ ସେମାନଙ୍କୁ ତ ବଂଚେଇ ପାରିବି ।

ତସ୍କର : କିନ୍ତୁ ଖାଲି କହିଦେଲେ ତ ହୋଇଯିବନି । ଏଟା ଚୋରସଂଘ । ଏଠି କେବଳ ଚୋରମାନେ ସଭ୍ୟ ହୋଇପାରିବେ । ଆପଣତ ଚୋର ନୁହଁନ୍ତି । ଏ ସଂଘରେ ମିଶିବେ କେମିତି ?

ହରକତ୍ : ଆରେ ବାବା ତସ୍କର । ମୁଁ କ'ଣ ଚୋର ନୁହେଁ ? ମୁଁ କ'ଣ ଚୋରୀ କରିନି ? ମୁଁ ଯେତିକି ଚୋରୀ କରିଛି, ସେତିକି ଚୋରୀ କରିଥିବା ଲୋକ ବୋଧହୁଏ ଏଠି ନଥିବେ ।

ସମସ୍ତେ : ସତେ ?

ହରକତ : ହଁ ଚୋରମାନଙ୍କ ଜିନିଷ. ଜବତ ହୋଇ ଥାନାରେ ରହେ । ମୁଁ ତାକୁ ଚୋରୀ କରେ ।

ଗୁପ୍ତା : ଆରେ ଚୋର କା ଚୋର ।

ନେତା : ଠିକ୍‌ଅଛି ଲେଖ । (ହରକତ୍ ନାଁ ଲେଖେ ହରବର ଆସନ୍ତି ।)

ହରବର : ଆଜ୍ଞା ମୁଁ ବି ଚୋର ।

ଗୁପ୍ତା : ଏଁ ଦାରୋଗାଜୀ ! ଆପ୍ ?

ନେତା : କ'ଣ କିହେ ମାରାଣ୍ଡିବାବୁ ?

ହରବଟ : କିସ କରିବି ଆଜ୍ଞା । ମୋ ଚୋର ଚାଲିଗଲେ କନ୍‌ଷ୍ଟେବଲ୍ ଚାଲିଗଲେ । ଆଉ କାହାକୁ ନେଇ ବଂଚିବି ?

ନେତା : ତା' ବୋଲି....

ହରବର : ଚୋର ସଂଘରେ ରହି ଦିନ କାଟିବି ।

ତସ୍କର : କିନ୍ତୁ ଆପଣ ଜାଣନ୍ତି, କେବଳ ଚୋରମାନେ ହିଁ ଏ ସଂଘରେ ରହିପାରିବେ ।

ହରବର : ହଁ ମୁଁ ବି ଚୋର ।

ସମସ୍ତେ : କିପରି ?

ହରବର : ହରକତ୍ ସିନା ଚୋରଙ୍କ ଜିନିଷ ଚୋରୀ କରେ । ମୁଁ ଚୁପ୍‌ଚୁପ୍ ହରକତର ଜିନିଷରୁ ଚୋରୀକରେ ।

ହରକତ : ସାର୍ ।

ହରବର : ହଁରେ ହରକତ୍ ।

ହରକତ : ଗାନ୍ଧିଜୀଙ୍କ ରାଣ ?

ହରବର : ଗାନ୍ଧିଜୀଙ୍କ ରାଣ ।

ନେତା : ଠିକ୍‌ଅଛି ଲେଖ । (ଦୀର୍ଘଶ୍ୱାସରେ)

ହରବର : (ନାଁ ଲେଖନ୍ତି)

ମେନେଜର : ମୁଁ ବି ଅନେକ ଚୋରୀ କରିଛି ।

ତସ୍କର : ମେନେଜରବାବୁ !

ଗୁପ୍ତା : ମେନେଜର ସାବ୍ ! ବେଙ୍କ୍ ମେ କୈସେ ?

ମେନେଜର : ଆପଣମାନେ ଚିଟ୍‌ଫଣ୍ଡ କଥା ଶୁଣିଥିବେ । ସେଥିରେ ହୋଇଥିବା ଦୁର୍ନୀତି ବିଷୟରେ ଜାଣିଥିବେ । ଶହଶହ ଧରାପଡ଼ି ଜେଲ୍ ଗଲେଣି ?

ମୁଁ ବି କେତେବେଳେ ଧରାପଡ଼ିଯିବି । ତା' ଆଗରୁ ଉକିଁରି ଛାଡ଼ି ଚୋରସଂଘରେ ମିଶିଗଲେ ଗଲା ।

ଗୁପ୍ତା : ଠିକ୍ ହେ ଲିଖିଲୋ ଆପନା ନାମ । ଆରେ ଭାଇ ଔର୍ କୋଇ ହୈ ? (ଅଜ୍ଞାନ ଉଠନ୍ତି)

ଅଜ୍ଞାନ : ଆରେ ମୋ ନାଁଟା ଲେଖ ।

ସମସ୍ତେ : ଓକିଲ ସାର୍ ଆପଣ ?

ଅଜ୍ଞାନ : ହଁ, ମୁଁ କୋର୍ଟରେ ସାକ୍ଷୀ ସହ ପ୍ରମାଣ କରାଇଦେବି ମୁଁ ଚୋର । ଆରେ ମୁଁ ନିଜେ ସିନା ଚୋରୀ କରେନି । ହେଲେ ତମଭଳି ଚୋରମାନଙ୍କୁ ଆଇନଗତ ସାହାଯ୍ୟ କରେ କି ନା ? ଆରେ କେବଳ ଏଇ ଚୋରୀବୃତ୍ତିର ବିକାଶପାଇଁ ମୁଁ ମୋ ଜୀବନ ବିତେଇ ଦେଇଛି । ତେଣୁ ଚୋରମାନେ ଯେତେବେଳେ ଇଉନିୟନ୍ ମେମ୍ବର । ମୁଁ ଚୋରଙ୍କ ଓକିଲ ମୁଁ ମେମ୍ବର ହେବିନି ? ଅଲବତ୍ ହେବି । ନହେଲେ ସିଧା କୋର୍ଟକୁ ଘୋଷାରି ଦେବି ।

ଗୁପ୍ତା : ହାଁ ହାଁ ଠିକ୍ ହୈ । ଲିଖୋ ଭାଇ ଆପନା ନାମ ।

ତସ୍କର : ଦେଖନ୍ତୁ, ଯେଉଁମାନଙ୍କ ନାଁ ଲେଖାଗଲା । ସେମାନେ ସମସ୍ତେ ଚୋର ଏବଂ ଆଜିଠାରୁ ମାସିକ ବେତନ ପାଇବାକୁ ହକ୍‌ଦାର । ଯଦି ଆଉକେହି ଭୁଲ୍‌ରେ ରହିଯାଇଥାଆନ୍ତି ତା'ହେଲେ ଆସନ୍ତୁ । ଏବେ ବି ସମୟ ଅଛି । ପରେ ଦୋଷ ଦେବେନି ? କେହି ଅଛନ୍ତି କି ) ?

ଗୁପ୍ତା : ନେହିଁ ବହତ ହୋଗୟା । (ନେତା ଉଠନ୍ତିÿ

ନେତା : ରହରେ ତସ୍କର ! ମୋ ନାଁଟା ଲେଖିଦିଏ । ଆଉ ମୁଁ କାହିଁକି ବାକି ରହିବି ?

ସମସ୍ତେ : ଆପଣ ?

ନେତା : ଆରେ ସାରା ଜନତା ଯେତେବେଳେ ଚୋରସଂଘରେ । ଆଉ ମୁଁ ନେତା ହୋଇ କାହିଁକି ତାଙ୍କଠୁ ଦୂରେଇ ରହିବି ? ଏ ଗଣତନ୍ତ୍ର ଯୁଗରେ ସଂଖ୍ୟାର ଜୟ ହୁଏ । ସେ ଚୋର ହେଉ ତ ସାଧୁ ହେଉ ତା' ଭୋଟର ମୂଲ୍ୟ ସମାନ । ତେଣୁ ଯାହାର ସଂଖ୍ୟା ଅଧିକ ଆମେ ତାହାରି ନେତା ।

ତସ୍କର : କିନ୍ତୁ, ଏ ସଂଘ କେବଳ ଚୋରଙ୍କର । କେବଳ ଚୋରମାନେ ହିଁ ଏଥିରେ ସଭ୍ୟ ହୋଇପାରିବେ । ଆପଣ ତ ଆଉ ଚୋର ନୁହଁନ୍ତି ?

ନେତା : ମୁଁ ଚୋର ନୁହେଁ । ଚୋରଙ୍କ ସର୍ଦ୍ଦାର ।

ସମସ୍ତେ : କେମିତି ?

ନେତା : ମୁଁ ଛାତ୍ରାବସ୍ଥାର ଚୋରୀବିଦ୍ୟା ପ୍ରତି ଗଭୀର ଭାବରେ ଆସକ୍ତ । କ୍ଲାସ୍‌ରେ କାହା ବେଗ୍‌ରୁ କଲମ ତ କାହା ବେଗ୍‌ରୁ ବହି ଚୋରୀକରି କେତେ ଯେ ଅବଧାନୀ ବେତ ଖାଇଛି । ଏ ପିଠିରେ ତା' ଦାଗ ଖୋଜିଲେ ମିଳିପାରେ । ଶେଷରେ ମାଷ୍ଟ୍ରଙ୍କ ଚଷମା ଚୋରୀକରି ପାଠ ଛାଡ଼ି ବଡ଼ଚୋର ବନି ଜେଲ ଭୋଗିଲି । କିନ୍ତୁ ଜେଲ୍‌ରେ ଥାଇ ଇମିତି ଅକଲ ଖଟେଇଲି ଯେ - ରାତାରାତି ଗାନ୍ଧିଟୋପି ପିନ୍ଧି ସ୍ୱାଧୀନତା ସଂଗ୍ରାମୀ ବନିଗଲି ଏବଂ ସେହି କୋଟାରେ ଏବେ ନେତା, ଦେଶସେବକ ।

ତସ୍କର : ତା'ହେଲେ ଆପଣ ବି ଚୋର ?

ନେତା : ଆରେ ତମେମାନେ ସବୁ ଖବରକାଗଜ ପଢୁନକି ? ନିତି ବାହାରୁଛି - ହାୱାଲା ସ୍କାମ୍, ଗୱାଲା ସ୍କାମ୍, ୟୁରିଆ ସ୍କାମ୍, ବୋଫର୍ସ ସ୍କାମ୍ କେତେ କହିବି । 2g. ସ୍କାମ୍ ଆରେ ଏଗୁଡ଼ାସବୁ କାହାର କାଣ୍ଡ ଜାଣ ମୋରି ।

ଆରେ ସେକଥା କ'ଣ କହୁଛ ମଣିଷ ଖାଦ୍ୟ ଖାଇ ପେଟ ପୂରିଲାନି ବୋଲି କୋଟିକୋଟି ଟଙ୍କାର ଗୋଖାଦ୍ୟ ପରା ଚୋରୀକରି ଖାଇଯାଇଛି । ତେଣୁ ଯେହେତୁ ଚୋରୀ କରିଥିବାର ଶକ୍ତ ପ୍ରମାଣ ମୋ ନିକଟରେ ଅଛି । ତେଣୁ ମୁଁ ଚୋର । ଏ ଚୋରସଂଘରେ ସାମିଲ ହେବାର ମୋର ପୂର୍ଣ୍ଣ ଅଧିକାର ରହିଛି ।

ଗୁପ୍ତା : ଠିକ୍ ହୈ ଲିଖୋ ଆପନା ନାମ୍ (ନେତା ଲେଖିଲେ) ଔର୍ କୋଇ ହୈ ?

ତସ୍କର : ନା ଆଉ କେହି ନାହାନ୍ତି । ଆଉ କେହି ଅଛନ୍ତି ? (ଅପେକ୍ଷା କରନ୍ତି) ନା ଆଉକେହି ନାହାନ୍ତି ।

ଭାରତୀ : (ଉପରକୁ ଉଠୁଉଠୁ) ରୁହନ୍ତୁ, ମୁଁ ଅଛି ।

ତସ୍କର : ଭାରତୀ ! ତମେ !

ଭାରତୀ : ହଁ ଚୂଳ ଧଳା ହୋଇଗଲା, ରଙ୍ଗ ଫିକା ପଡ଼ିଗଲା, ବୟସ ବି ଗଡ଼ିଗଲା । ଆଉ ତ କେହି ଆଡ଼ ଆଖିରେ ବି ଚାହୁଁନାହାନ୍ତି, ତମେ ବି ତ ଚାହୁଁନ । ମୁଁ ବଞ୍ଚିବି କେମିତି, କଳାକାର ପେନସନ୍ ତ ହେଲାନି, ତେଣୁ ଚୋରସମିତିରେ ମିଶିଗଲେ ଯଦି କିଛି ମିଳେ ଅବଶିଷ୍ଟ ଜୀବନ ବିତେଇଦେବି ।

ନେତା : ଚୋରସମିତିରେ ମିଶିଯିବ, ଖାଲି କହିଦେଲେ ମିଶିଯିବ ।

ଅଜ୍ଞାନ : ତମେ ଚୋର ବୋଲି ପ୍ରମାଣ ଦେଖାଅ ।

ଭାରତୀ : ପ୍ରମାଣ କ'ଣ କହୁଛନ୍ତି । ମୁଁ ଚୋରୀକରି ଧରାପଡ଼ିଥିବାର ଓ ଧରାପଡ଼ି ଜେଲ୍ ଯାଇଥିବାର ପ୍ରମାଣ ଦେଖେଇଦେବି ।

ଗୁପ୍ତା : ଆରେ ବାପ୍‌ରେ ବାପ୍ ।

ନେତା : ତମେ ଚୋରୀକରି ଧରାପଡ଼ିଛ, ଜେଲ୍ ବି ଯାଇଛ ?

ଅଜ୍ଞାନ : ତା' ମାନେ, ଧରାପଡ଼ିଛ ଯେତେବେଳେ ତମେ ନିଶ୍ଚୟ ଚୋର ।

ସାଧୁ : ତଥାପି ପ୍ରମାଣ ଦେଖେଇବାକୁ ପଡ଼ିବ ।

ଭାରତୀ : (ତସ୍କରକୁ ଚାହିଁ) କ'ଣ ପ୍ରମାଣ ଦେବି ।

ତସ୍କର : ମାନେ, ନାଇ, ମାନେ ନା-ନା ଥାଉ ।

ଭାରତୀ : ନ କହିଲେ ମୋର ଅବସୋସ ରହିଯିବ ।

ତସ୍କର : ହେଲେ...ନା-ନା

ଭାରତୀ : ମୁଁ ତ ଅଭିନେତ୍ରୀ । କିନ୍ତୁ ଅଭିନୟ କରୁକରୁ ସତରେ ଭଲପାଇଗଲି ମୋ ନାଟକର ନାୟକକୁ । ଆମ ଭଲପାଇବା ଏତେ ଗଭୀର ଥିଲା ଯେ, ଜଣେ ଜଣକୁ ନଦେଖିଲେ ଦଣ୍ଡେ ରହିପାରୁ ନଥିଲେ । ଶେଷରେ ଦୁହେଁ ଲୁଚି ପଳେଇଲୁ ବମ୍ବେ । ମୁଁ ଜାଣେନି ଯେ ମୋ ନାୟକ ବିବାହିତ । ତାଙ୍କ ସ୍ତ୍ରୀ F.I.R. ଦେଲେ ଯେ, ତାଙ୍କ ସ୍ୱାମୀଙ୍କୁ ଜଣେ ଦୁଃଶ୍ଚରିତ୍ରା ଅଭିନେତ୍ରୀ ଅପହରଣ କରିନେଇଛନ୍ତି । ପୁଲିସ୍ ଧରିଲା । ମୁଁ ତ ଅପହରଣ କରିନଥିଲି । ପୁଲିସ୍‌କୁ କହିଲି ଆମେ ପରସ୍ପରକୁ ଭଲପାଉ । କିନ୍ତୁ, ବନ୍ଧୁ ମୋର ସେକଥା କହିନେଲି । ସେ କହିଲେ, ତାଙ୍କୁ ନିଶା ଦେଇ ଅପହରଣ କରିଛି । ମୁଁ ଆଉ କ'ଣ କରିଥାନ୍ତି । ତାଙ୍କ ସୁନାସଂସାରକୁ ବଞ୍ଚେଇବା ପାଇଁ ପୁଲିସ୍ ହାତରେ ବନ୍ଧାହେଲି, ଜେଲ୍ ବି ଗଲି । ସେହିଦିନଠୁଁ ମୁଁ... (କାନ୍ଦି ପକାଇଲେ)

ସମସ୍ତେ : ଭାରତୀ !

ଭାରତୀ : କ'ଣ ହାରକିନ ଓରଫ ତସ୍କର, ମୁଁ କ'ଣ ସତ କହୁନି ।

ତସ୍କର : (ତଳକୁ ମୁଣ୍ଡ ପୋତିଦିଏ ।)

ନେତା : ହଉ ହେଲା ହେଲା ଛାଡ଼, ତମେ ଚୋର, ତମ ନାଁ ଲେଖ । ଆଉ କେହି ଅଛନ୍ତି ।

ତସ୍କର : ନା ଆଉ କେହି ନାହାନ୍ତି । ମୁଁ ସର୍ବଶେଷରେ ଚୋରସମିତି ସମ୍ପାଦକ ଭାବରେ ବ୍ୟବସାୟୀ ସଂଘର ସଭାପତିଙ୍କୁ ଅନୁରୋଧ କରିବି ସେ ତାଙ୍କର ପ୍ରତିଶ୍ରୁତି ପ୍ରଦାନ କରିବେ ।

ଗୁପ୍ତା : (ଦୀର୍ଘଶ୍ୱାସରେ ଉଠନ୍ତି) ଭାଇଓ ! ପହଲେ ପହଲେ ମୋ ଶୋଚତା ଥା କି ଇତ୍‌ନେ ଛୋଟା ଦୁନିଆ ମେ ଶାୟଦ୍ ଏକ ଦୋ ଚୋର ହୋଙ୍ଗେ । ଲେକିନ୍ ଆଜ୍ ମୁଝେ ପତା ଚଲାକି ୟହାଁ ଜିତ୍‌ନେ ଲୋଗ୍ ବୈଠେ ହେଁ ମୁଝେ ଛୋଡ଼କର୍ ସବ୍ ଚୋର ହେ । ୟେ ସବ୍‌କେଲିଏ ସବ୍ କୁଛ ଇନ୍ତେଜାମ୍ ମୁଝେ କରନା ହୈ । ଲେକିନ୍ ଭାଇସାବ୍ ଆପ୍ ତୋ ସବ୍ ଚୋର ହୈ । ମୈ କ୍ୟା ଅକେଲା ସାଧୁ ହୁଁ ? (ହସି) ନେହିଁ ଭାଇସାବ୍ ନେହିଁ ମୁଝେସେ ବଡ଼ା ଚୋର ଇସ୍ ଦୁନିଆଁ ମେ କୋଇ ନେହିଁ । ମୋ ଚୋରୀ ମେ ପୈଦା ହୁଆ, ଚୋରୀ ମେ ଜିନା ଔର ଚୋରୀ ମେ ମରନେ କେ ଲିଏ ଲଢ଼୍ ରହା ହୁଁ ।

ସମସ୍ତେ : ତେବେ ?

ଗୁପ୍ତା : ଜୀ ହାଁ । ୟହାଁ ଜିତ୍‌ନେ ଚୋର ହୈ, ୟେ ସବ୍‌କୁ ମେ ଲୁଟ୍ ଚୁକା ହୁଁ । ମେ ମହାଚୋର ହୁଁ ।

ସମସ୍ତେ : ପୁଣି ସାଧୁ କିଏ ?

ଗୁପ୍ତା : ମୁଝେ କ୍ୟା ମାଲୁମ୍ ?

ତସ୍କର : ଆମକୁ ବେତନ ଦବ କିଏ ?

ଗୁପ୍ତା : (ହସି) ମୁଝେ କ୍ୟା ମାଲୁମ୍ ?

ସମସ୍ତେ : ଆମେ ଆମେ ବଂଚିବା କେମିତି ?

(ସମସ୍ତେ ନିର୍ବାକ୍ । ଏହି ସମୟରେ ହାରକିନ ଟୋପି ଖୋଲି ଦିଅନ୍ତି )

ହାରକିନ : ବାସ୍ ବାସ୍ ବାସ୍ । ଆଉ ନୁହେଁ । ନାଟକ ଏଇଠି ଶେଷ ।

ସମସ୍ତେ : ଶେଷ ?

ହାରକିନ : ଆଉ ଏଇଟା ତ ଶେଷ ସିନ୍ ।

ଚଟାପଟ୍ : ନା, ଏ ନାଟକ ଏଇଠି ଶେଷ ହୋଇପାରିବନି । ଆପଣଙ୍କୁ ଆହୁରି ଗୋଟିଏ ସିନ୍ ଲେଖିବାକୁ ପଡ଼ିବ ।

ହାରକିନ : ଆହୁରି ଗୋଟେ ସିନ୍ ? କି ସିନ୍ ?

ଝପ୍‌ପଟ : ସାଧୁ ପ୍ରାପ୍ତ ସିନ୍ ।

ସମସ୍ତେ : ହଁ ହଁ ସାଧୁକୁ ନ ପାଇଲା ପର୍ଯ୍ୟନ୍ତ ଆମେ ଛାଡ଼ିବୁନି ।

ହାରକିନ : ସାଧୁ ?

ମେନେଜର : ହଁ ତମେ ତ ଲେଖିଛ ।

ନେତା : ଆଉ ଆମେ ବି ଅଭିନୟ କରି ଦେଖେଇଲୁ ।

ଅଜ୍ଞାନ : ଆମେ ତ ସବୁ ଚୋର ।

ହରବର : ଆଉ ଚୋରୀ କରିବୁନି ବୋଲି ପ୍ରତିଜ୍ଞା କରିଦେଲୁ ।

ହରକତ୍ : ଚାକିରି ବି ଛାଡ଼ିଦେଲୁ ।

ଅଜ୍ଞାନ : ସାଧୁକୁ ନ ପାଇଲେ ଆମେ ବଂଚିବୁ କେମିତି ?

ହରକତ୍ : ଆମକୁ ଦରମା ଦବ କିଏ ?

ହାରକିନ : ଏଇଟା ତ ନାଟକର ପ୍ରଶ୍ନ 'ଏଠି ସାଧୁ କିଏ ?' (ସମସ୍ତେ ସାଧୁ କିଏ ? ସାଧୁ କିଏ କହି ଖୋଜିଲେ)

ନେତା : ହଇ ହୋ ଦାସେ । ଆମେ ତ ସବୁ ଚୋର ହେଲେ । ତମେତ କାହିଁ କେଉଁଠି ଚୋରୀ କରିନା ?

ହାରକିନ : ଏଁ । ଏ କି କଥା ? ମୁଁ ଚୋରୀ କରିବି ? ଆପଣ ପୁଣି ବିଶ୍ୱାସ କରିପାରୁଛନ୍ତି ?

ମେନେଜର : ହଁ ଏଇଟା ତ ଶେଷଦୃଶ୍ୟ । ଆପଣ ଆମ ଭିତରେ ଏକମାତ୍ର ସାଧୁ । ଆପଣ ସର୍ତ୍ତ ଅନୁଯାୟୀ ଆପଣ ମାସକୁ ମାସ ଆମଭଳି ଚୋରମାନଙ୍କୁ ବେତନ ଦେବେ ।

ହାରକିନ : ଏଁ । ଏତେ ଲୋକଙ୍କୁ ମାସକୁ ମାସ ବେତନ ? ବିଚରା ଦୁଃସ୍ଥ ନାଟ୍ୟକାର ହାରକିନ ଦାସ ମରିଯିବ ।

ନେତା : ତମେ ତ ଲେଖିଛ ।

ଅଜ୍ଞାନ : ଏୟ । ସିଧା କୋର୍ଟକୁ ଘୋଷାରି ନେବି ।

ହରବର : ଆଉ ? ଆପଣ ତ ସାଧୁ ଆମେସବୁ ଚୋର । ଆପଣ ଆମକୁ ଦରମା ଦେବେ ।

ହାରକିନ : ଭଲା ଅଡୁଆକଥା ହେଲା ? ହେ ବାବୁ ମୋ କଥା ଶୁଣନ୍ତୁ । ଏବେ କ'ଣ ସେମିତି ସାଧୁ ଅଛନ୍ତି ।

ନେତା : ହଁ, ତମେ ତ ଅଛ ।

ସମସ୍ତେ : ହଁ ସତକଥା ।

ଅଜ୍ଞାନ : ତମେ ତ ଚୋର ନୁହଁ ।

ହାରକିନ : ନା, ମୁଁ କେମିତି ଚୋର ହେବି ।.

ଗୁପ୍ତା : ତ ମିଲ୍‌ଗୟା ସାଧୁଜୀକା ସଂଧାନ ।

ଅଜ୍ଞାନ : ତମେ ଆମ ଭିତରେ ଏକମାତ୍ର ସାଧୁ । ତମ ସର୍ତ୍ତ ଅନୁଯାୟୀ ଆପଣ ମାସକୁମାସ ଆମଭଳି ଚୋରମାନଙ୍କୁ ବେତନ ଦେବେ ।

ହାରକିନ : ଏଁ । ଏତେ ଲୋକକୁ ମାସକୁମାସ ବେତନ ?

ଅଜ୍ଞାନ :ତମେ ତ ନିଜେ ଲେଖିଛ ।

ନେତା : ଯିଏ ସାଧୁ ସିଏ ଚୋରକୁ ପୋଷିବ ।

ସମସ୍ତେ : ଆପଣ ତ ସାଧୁ ।

ନେତା : ଆରେ ବୋଲ ସାଧୁ ଶ୍ରୀ ହାରକିନ ଦାସ

ଅନ୍ୟମାନେ : ଜିନ୍ଦାବାଦ୍ ।

ଗୁପ୍ତା : ଯବତକ୍ ସୂରଯ ଚନ୍ଦ ରହେଗା

ହରକତ : ହାରକିନ ତେରା ନାମ ରହେଗା ।

ହାରକିନ : ଆରେ ଭାଇ ଶୁଣ ଶୁଣ ମୋ କଥା ଶୁଣ । ଆପଣମାନେ କେମିତି ବିଶ୍ୱାସ କରୁଛନ୍ତି ଯେ ମୁଁ ସାଧୁ ବୋଲି ?

ସମସ୍ତେ : (ହଠାତ୍ ସ୍ତବ୍ଧ) ଆଉ ?

ହାରକିନ୍ : ଏ ସଭାରେ ମୋତେ ସତ୍ୟାନାଶ କଲ । ଆରେ ଭାଇ ମୁଁ ବି ଜଣେ ବ୍ୟବସାୟିକ ଚୋର । ଟଙ୍କା, ପଇସା ଚୋରୀ କରିବାର ସୁଯୋଗ

ସିନା ପାଇନି । ହେଲେ ଏଇ ଯେ ନାଟକ, କବିତା, ଗଳ୍ପ ଲେଖି ମୁଁ ଜଣେ ବିଖ୍ୟାତ ସାହିତ୍ୟିକ ବୋଲାଉଛି । ଏଗୁଡ଼ା ସବୁ ଚୋରୀମାଲ । ଏଠୁସେଠୁ ଉତାରି ଆଣି ମୋ ନାଁରେ ଲେଖିଦେଇ ପୁରସ୍କାର ମାରିନେବା ମୋ କାମ ।

**ସମସ୍ତେ** : ସାହିତ୍ୟରେ ଚୋରୀ ?

**ହାରକିନ** : ଆଉ ଏବେ ସାହିତ୍ୟରେ ଯେତେ ଚୋରୀ ହେଉଛି, ହୁଏତ ଆଉ କେଉଁଥିରେ ଏତେ ଚୋରୀ ହେଉନି । ଯଦି ଅବିଶ୍ୱାସ କରୁଛ, ତେବେ ଏଇଠି କୋଉଁଠି ହେମେନ୍ଦ୍ରବାବୁ ମୁହଁ ଶୁଖେଇ ବସିଥିବେ । ତାଙ୍କୁ ପଚାର, ଆଜି ଯେ ନାଟକ ଅଭିନୀତ ଏଟା କାହା ଲେଖା ? ଏଟା ସେହି ହେମେନ୍ଦ୍ରବାବୁଙ୍କ ଲେଖା । ମୋତେ ପଢ଼ିବାକୁ ଦେଇଥିଲେ । ମୁଁ ବେଶ୍ କାଇଦାରେ ଉତାରୀ ନେଇ, ନାଁଗୁଡ଼ା ଟିକିଏ ଏପଟ ସେପଟ କରିଦେଇ ମୋ ନାଁରେ ମାର୍କେଟ୍‌କୁ ଛାଡ଼ିଦେଲି । ମାର୍କେଟ୍ ହିଟ୍ । କ୍ଷମା କରିବେ ହେମେନ୍ଦ୍ରବାବୁ, ସଭାରେ ମାନିଗଲି ।

**ନେତା** : ହଇଓ ହାରକିନ । ତମେ ତ ସତରେ ଗୋଟେ ହାରକିନ ।

**ଗୁପ୍ତା** : ଆରେ ଭାଇ ! ହମସବ୍ ଚୋର ଲେକିନ୍ ତୁମ ତ ମହାଚୋର ।

**ହାରକିନ** : ମୁଁ ପରା ମାନିଗଲି ।

**ଅନ୍ୟମାନେ** : ତେବେ ସାଧୁ କିଏ ? (ବାରମ୍ବାର ପ୍ରତିଧ୍ୱନିତ ହୁଏ)

**ନେତା** : ନାଃ, ଆଉ ଭିତରେ ସାଧୁ ମିଳିବା ଅସମ୍ଭବ । ତେଣୁ ବଂଧୁଗଣ ! ଆଉ ଅଯଥାରେ ସାଧୁ ପଛରେ ନ ଗୋଡ଼େଇ ଆସ ପୂର୍ବପରି ଆମେ ମିଳିମିଶି ସାଙ୍ଗହୋଇ ଯଥାରୀତି ଚୋରୀ କରିବା ।

**ସମସ୍ତେ** : ହଁ ହଁ ସେଇଆ ହବ ସେଇଆ ହବ ।

(ସମସ୍ତେ ଯାଉଥିଲେ ପାଟି ଶୁଭେ)

ତରୁଣ : ନା, ହେଇପାରିବ ନାହିଁ । (ମଞ୍ଚକୁ ଉଠିଆସି) ହେଇଗଲା, ବହୁତ ହେଇଗଲା, ଆଉ କିନ୍ତୁ ହେଇପାରିବନି ।

ହାରକିନ : କାହିଁକି ହେଇପାରିବନି ?

ତରୁଣ : ଏ ପ୍ରଶ୍ନ ପଚାରିବାକୁ ତମକୁ ଲାଜଲାଗୁନି ହାରକିନ ଦାସ ଜଣେ ସାହିତ୍ୟିକହୋଇ ସାହିତ୍ୟ ଚୋରୀ କରୁଛ ? ଚୋରଙ୍କୁ ଧରିବା ପାଇଁ ଚାକିରି କରିଥିବା ପୁଲିସ୍ ଯଦି ଚୋରଠୁ ଚୋରୀକରେ, ଈଶ୍ୱରଙ୍କୁ ଖୋଜୁଥିବା ତପସ୍ୱୀ ଯଦି ଈଶ୍ୱରଙ୍କ ମୂର୍ତ୍ତି ଚୋରୀକରେ, ଆଇନ୍‌ର ସାଧନା କରୁଥିବା ଓକିଲ ଯଦି ଆଇନର ଅବମାନନା କରେ; ବ୍ୟବସାୟୀ ଯଦି ସମାଜରୁ ଚୋରୀକରେ ଦେଶସେବକ ନେତା ଯଦି ଦେଶକୁ ଲୁଟ୍ କରେ - ଆଉ ଟଙ୍କାପଇସାକୁ ନିରାପଦରେ ରଖିବାପାଇଁ କଥା ଦେଇ ଯଦି...

ନେତା : ଓ ଓ ଆମକୁ କହିଦଉଛ ଏଠି କ'ଣ ଆଉ କେହି ଚୋରୀ କରୁନାହାନ୍ତି ।

ଅଜ୍ଞାନ : ଡାକ୍ତର ପରା ରୋଗୀର କିଡ୍‌ନୀ ଚୋରୀକରି ବିକି ଦଉଛି ।

ହାରକିନ: ମାଷ୍ଟର ପରା ପରୀକ୍ଷା ଆଗରୁ ପ୍ରଶ୍ନ ଚୋରୀକରି ବିକୁଛି ।

ତରୁଣ : ଏ ସମାଜ ଆଜି ଚୋର ଅସାଧୁଗ୍ରସ୍ତ ।

ହାରକିନ: ଏ ନାଟକରେ ତ ଆମେ ସେଇଆ କହୁଛୁ ।

ନେତା : ଏଠି ସମସ୍ତେ ଚୋର, ସାଧୁ ମିଳିବେନି । ତେଣୁ ଆମେପୁଣି ଚୋରୀ କରିବା ।

ତରୁଣ : ଆଉ ସାଧୁ ଯଦି ମିଳିଯାଏ ?

ହାରକିନ: ଆମେ ଚୋରୀ ଛାଡ଼ିଦବୁ ।

ତରୁଣ : ପକ୍‌କା

ନେତା : ଏକଦମ୍ ପକ୍‌କା

ଭାରତୀ : ହେଲେ...ସାଧୁ କାହିଁ ?

ନେତା : (ସାଧୁକୁ ଦେଖାଇ) ସାଧୁ ତ ନିଜେ ଚୋର ।

ତରୁଣ : ମୁଁ, ମୁଁ ତରୁଣ ଦାସ ମୁଁ ସାଧୁ ।

ଅନ୍ୟମାନେ : (ଉହାଁନ୍ତି) ତୁ...ତୁ...ସା...ଧୁ... ?

ତରୁଣ : ହଁ, ଆପଣମାନେ କହିଛନ୍ତି । ମୋତେ ସାଧୁ ବୋଲି କହି ମଂଚରୁ ତଡ଼ି ଦେଇଛନ୍ତି । ମୁଁ କ'ଣ ସାଧୁ ନୁହେଁ ? ଥରେ ହଁ କହିଛ ମାନେ ମନା କରିପାରିବନି ।

ନେତା : ହେଲା ! ତମେ ଯଦି ସାଧୁ । ଆମ Condition ବିଷୟରେ ଭଲଭାବରେ ଜାଣିଛ ।

ତରୁଣ : ହଁ ଆପଣମାନଙ୍କୁ ଦରମା ଦେବି । ଆପଣମାନେ ଆଉ ଚୋରୀକରିବେନି ସାଧୁହୋଇ ଜୀବନ ବିତାଇବେ ।

ଅନ୍ୟମାନେ : ବାସ୍

ତରୁଣ : ମୁଁ ରାଜି....(ସମସ୍ତେ ଜିନ୍ଦାବାଦ୍ କଲେ ସମସ୍ତଙ୍କୁ ଖଣ୍ଡେ ପ୍ଲାକାର୍ଡ଼ ଦେଲେ ତସ୍କର) ଏଇଟା ଗୋଟେ ପାସ୍‌ବୁକ୍ ଏଠୁ ଯେତେ ଉଠେଇଲେ ବି ଏହା ଶେଷ ହେବନି ବା ଯାକୁ କେହି ଚୋରୀ କରିପାରିବେନି - ଏଥିରୁ ଆପଣ ଯେତେଇଚ୍ଛା ସେତେ ଦରମା ନେଇ ପାରିବେ ।

ସମସ୍ତେ : (ଦେଖନ୍ତି ପଢ଼ନ୍ତି ଓ ସାମ୍ନାକୁ ଦେଖାନ୍ତି) ଜ୍ଞାନଧନ, ବିଦ୍ୟାରତ୍ନ ।

ତରୁଣ : ଇଏ ହେଉଛି ସାଧୁର ସମ୍ପଦ । ଏଇ ସମ୍ପଦ ବଳରେ ଆପଣମାନେ ଆପଣମାନଙ୍କ ପୁଅଝିଅ ବା ଉତ୍ତରାଧିକାରୀଙ୍କୁ ସାଧୁଟିଏ କରି ଗଢ଼ି ତୋଳନ୍ତୁ ସେମାନେ ଆପଣଙ୍କୁ ପୋଷିବେ ।

ଅନ୍ୟମାନେ : ମାନେ ?

ତରୁଣ : ଧନ୍ୟବାଦ ! ଆପଣମାନଙ୍କୁ ନୁହେଁ ହାରକିନ ଦାସଙ୍କୁ ଯିଏକି ହାରକିନ ଜାଲି ଏ ସମାଜରୁ ଚୋରମାନଙ୍କୁ ଖୋଜୁଖୋଜୁ ପରୋକ୍ଷରେ ସାଧୁ ଖୋଜିବାର ଅବା ସାଧୁ ବନିବାର ରାସ୍ତାଟିଏ ଦେଖେଇ ଦେଲେ । ଧନ୍ୟ ତମେ ହାରକିନ । ସତରେ ତମେ ହିରୋ ।

ହାରକିନ୍(ତସ୍କର) : ହିରୋ ?

ଅନ୍ୟମାନେ : ହାରକିନ୍ ଦାସ ହିରୋ ।

**- ଯବନିକା -**



ଓଡ଼ିଆ ମଂଚ ନାଟକ ପାଇଁ ଯେଉଁ କେତେଜଣ ନାଟ୍ୟକାର ନିଜକୁ ସଂପୂର୍ଣ୍ଣରୂପେ ଉତ୍ସର୍ଗ କରିଦେଇଛନ୍ତି ସେମାନଙ୍କ ମଧ୍ୟରେ ନାଟ୍ୟକାର ହେମେନ୍ଦ୍ର ମହାପାତ୍ର ଅନ୍ୟତମ। ସାଂପ୍ରତିକ ସମୟ ଓ ଜୀବନକୁ ମଂଚଉପରେ ବେଶ୍ ପ୍ରାଂଜଳ ଭାବରେ ପରୀକ୍ଷା ନିରୀକ୍ଷାକରି ଏକ ସକାରାତ୍ମକ ସିଦ୍ଧାନ୍ତରେ ଉପନୀତ ହେବାରେ ତାଙ୍କର ଏକନିଷ୍ଠ ଉଦ୍ୟମ ବେଶ ପ୍ରଶଂସନୀୟ। ତାଙ୍କ ରଚିତ ଶତାଧିକ ନାଟକ, ଗୀତିନାଟ୍ୟ, ଟେଲିନାଟକ, ଟେଲିଫିଲ୍ମ, ଓଡ଼ିଆ ପ୍ରଗତୀବାଦୀ ନାଟ୍ୟଧାରାର ପରିଚୟ ଦିଏ, ଏଥି ପାଇଁ ସେ ବହୁବାର ପୁରସ୍କୃତ ଓ ସଂବର୍ଦ୍ଧିତ। ତାଙ୍କ ବହୁଚର୍ଚ୍ଚିତ ନାଟକ 'ଯୁଗ ଚରିତ ବୃତ୍ତାନ୍ତ' ପାଇଁ ସେ ୨୦୦୨ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ। ବହୁ ଚର୍ଚ୍ଚିତ ଓଡିଆ ଚଳଚିତ୍ର 'ମୀମାଂସା' ତାଙ୍କର ଅନ୍ୟ ଏକ କୃତ୍ତିତ୍ୱ। ସେ 'ରଂଗମଂଚ' ନାମରେ ଏକ ଦୃଶ୍ୟ ଭିତ୍ତିକ ଭିଡିଓ ସାହିତ୍ୟ ପତ୍ରିକା ପ୍ରାୟ ପନ୍ଦର ବର୍ଷ ଧରି ପ୍ରକାଶ କରି ଅସୁଛନ୍ତି। ଏହି ପୁସ୍ତକଟି ତାଙ୍କର ଅନ୍ୟତମ ସଫଳ ନାଟ୍ୟ ପୁସ୍ତକ।

